✓ ଅରକ୍ଷିତ ଦାସଙ୍କ କୃତ

# ମହୀମଣ୍ଡଳ ଗୀତା

ଶ୍ରୀ ଦାଶରଥି ଦାସଙ୍କ ଦ୍ୱାରା
[illegible] ପ୍ରକାଶିତ



ପ୍ରାପ୍ତିସ୍ଥାନ


ଦାଶରଥି ପୁସ୍ତକାଳୟ
ବାଲୁବଜାର, କଟକ

ମୂଲ୍ୟ [illegible]    ମୁଦ୍ରଣ [illegible]



# ମହୀମଣ୍ଡଳ ଗୀତା

## ପ୍ରଥମ ଅଧ୍ୟାୟ

ମନ ଚୈତନ୍ୟକୁ ଦେଖିଣ । ଅତି ଅନନ୍ଦ ସେ ହୋଇଣ ॥
ଏ ମହୀମଣ୍ଡଳରେ ମୁହିଁ । ତୁମ୍ଭଙ୍କୁ ଖୋଜି ନ ପାରଇ ॥
ତୁମ୍ଭର ଦୟା ଥିଲା ଯେଣୁ । ଦର୍ଶନ ଦେଲ ମୋତେ ତେଣୁ ॥
ଏବେ ମୋ ସର୍ବ ଦୁଃଖ ଗଲା । ତୁମ୍ଭର ଦର୍ଶନ ମିଳିଲା ॥
ଏବେ ମୁଁ କଥା ଏ ଜଣାଇ । କହିବ ମୋତେ ଦୟାବହି ॥
ମହୀମଣ୍ଡଳ ଗୀତା କହ । ମୋ ମନୁ ସଂଶୟ ଫିଟାଅ ॥
ଏ ମହୀ ସ୍ଥିତିର ଯେ ଗୁଣ । ଶୁଣିଲେ ନିସ୍ତରିବି ପୁଣ ॥
ପ୍ରକୃତି ସଙ୍ଗରେ ଭ୍ରମଇ । ତୁମ୍ଭଙ୍କୁ ସେବି ନ ପାରଇ ॥
ହେ ପ୍ରଭୁ ମୋର ପ୍ରାଣପତି । ତୋ ବିନୁ ନାହିଁ ଆନ ଗତି ॥
ନମସ୍ତେ ପିତା ଗୁରୁଦାତା । ନମସ୍ତେ ଗୁରୁ ଜଗତ୍‌କର୍ତ୍ତା ॥
ନମସ୍ତେ ଗୁରୁ ସର୍ବଦେହୀ । ତୋ ବିନୁ ଅନ୍ୟ କେହୁ ନାହିଁ ॥
ନମସ୍ତେ ଗୁରୁ ସର୍ବଦେବ । ମୋତେ ଦୟାଟି ସଦା ଥିବ ॥
ନମସ୍ତେ ଗୁରୁ ମାୟାଧର । ମୋତେ ତୁ ମାୟା ଯେ ନ କର ॥
ନମସ୍ତେ ଗୁରୁ ଅନ୍ତର୍ଯ୍ୟାମୀ । ତୋ ମାୟା କେ ପାରିବ ଜାଣି ॥
ନମସ୍ତେ ଗୁରୁ ଦୟା ଯାʼକୁ । ତୋ ମାୟା ନ ଲାଗଇ ତାକୁ ॥

ନୋହିଲେ ତୋ ଦୟା ଯେ ଥରେ । ବ୍ରହ୍ମାଦି ଦେବାସୁର ନରେ ।
ନମସ୍ତେ ଗୁରୁ ସର୍ବଦେହୀ । ତୋହର ରୂପ ବର୍ଣ୍ଣ ନାହିଁ ।
ନମସ୍ତେ ଗୁରୁ ତୁ ଅନନ୍ତ । ନମସ୍ତେ ଗୁରୁ ଜଗନ୍ନାଥ ।
ନମସ୍ତେ ସର୍ବ ଜୀବ ଗୁରୁ । ନମସ୍ତେ ବାଞ୍ଛା କଳ୍ପତରୁ ।
ନମସ୍ତେ ଗୁରୁ ମୋକ୍ଷଦାତା । ନମସ୍ତେ ଗୁରୁ ପିତାମାତା ।
ନମସ୍ତେ ଗୁରୁ ଦୟାକର । ଥୋକାଏ ଜଣାଏ ଗୁମର ॥
ପଞ୍ଚଭୂତଙ୍କ ଅର୍ଥ କହ । ମୋ ମନୁ ସଂଶୟ ଫିଟାଅ ।
ଏହି ଦେହରେ ମୁହିଁ ଥାଇ । ପଞ୍ଚଭୂତଙ୍କୁ ନ ଚିହ୍ନଇ ।
ଏ ଦେହେ ପଞ୍ଚଭୂତ କେହୁ । ଏହା କହିବ ମହାବାହୁ ॥
ପୃଥିବୀ କାହୁଁ ଜାତ ହେଲ । ତୁମ୍ଭ ମାୟାକୁ ନ ଜାଣିଲ ।
ଯେବେ ତୋ ଦୟା ମୋତେ ହେବ । କ୍ଷମା ପୃଥ୍ୱୀରେ ଏହୁ ଥିବ ।
ହେ ଦେବ ଗୁରୁ ସାହି ସାହି । ଏ ଦେହ ପାର କର ତୁହି ।
ଏ ଦେହେ କିଛୁ କାର୍ଯ୍ୟ ନାହିଁ । ଯେବେ ତୁମ୍ଭଙ୍କୁ ନ ସେବଇ ।
ମନ ମୁଖରୁ ଏହା ଶୁଣି । ଚୈତନ୍ୟ କହେ ମଞ୍ଜୁବାଣୀ ॥
ହେ ମନ ଜାଣି ନ ପାରୁଛୁ । ପୃଥ୍ୱୀକି କପାଇଁ ନିନ୍ଦୁଛୁ ।
ପଞ୍ଚଭୂତଙ୍କ କଥା ଏହି । ପଚ୍ଛିଲୁ ଯେ ଶୁଣ ତୁହି ।
ପୃଥ୍ୱୀର ମହିମା କହିବା । ତୋ ମନୁ ସଂଶୟ ଦହିବା ।
ପୃଥ୍ୱୀ ନ ଥିଲେ ତହିଁ ମୁହିଁ । ତା' ଯେନ ଲୀଳା କରବଇଁ ।
ପୃଥ୍ୱୀ ନ ଥିଲେ ଲୀଳା କାହିଁ । ଦେହ ଗଲେଟି ଶୂନ୍ୟ ହୋଇ ॥
ଶୂନ୍ୟରେ କି ଲୀଳା କରବା । କେ ଅଙ୍ଗ ହୋଇ ରହିବା ।
ସେଠାରେ ଲୀଳା ନାହିଁ ଜାଣ । ପଞ୍ଚଭୂତହିଁ ଅଗଣନ ॥
ପଞ୍ଚଭୂତଟି ଏ ପୃଥ୍ୱୀରେ । ଲୀଳା କରନ୍ତି ଏ ସଂସାରେ ।
ପୃଥ୍ୱୀ ନ ଥିଲେ ଲୀଳା କାହିଁ । ଜା ଯେନ ବହବରୁ ତୁହି ।
ନାନାଦି ଭୋଗ ତୁ କରବୁ । ଯେବେ ପୃଥ୍ୱୀକି ରଖିଥିବୁ ।
ନାନାଦି ମୋର ଲୀଳା ଯେତେ । ପୃଥ୍ୱୀ ରଖିଣ ଦେଖ ନିତ୍ୟେ ॥

ପୃଥ୍ୱୀ ଗଲେ ତାହିଁ ରହିବୁ । ତା ଯେଣି ଭୋଗ ତୁ କରିବୁ ।
ପୃଥ୍ୱୀ ଥିଲେଟି ମୋର ନାମ । ଚନ୍ଦ୍ରା କରିବୁ ତୁହି ପୁଣି ॥
ପୃଥ୍ୱୀ ଥିଲେଟି ସର୍ବ କରି । ନାନାଦି କୌତୁକେ ବିହରି ।
ପୃଥ୍ୱୀ ଥିଲେଟି ସର୍ବସୁଖ । ନାନାଦି ଲୀଳା ମୋର ଦେଖ ।
ନାନାଦି ଦ୍ରବ୍ୟ ତୁ ଭୁଞ୍ଜିବୁ । ଖଟ ପଲଙ୍କେ ପହୁଡ଼ିବୁ ।
ନାନାଦି ଅଳଙ୍କାର ଯେତେ । ନାନାଦି ପୁଷ୍ପ ଅଛି କେତେ ।
ନାନାଦି ବାହନ ଯେ ଚଢ଼ି । ନାନାଦି ବସ୍ତ୍ର ଯେ ପହୁଡ଼ି ।
ନାନାଦି ରୂପ ଚନ୍ଦନହିଁ । କର୍ପୂର କସ୍ତୁରୀ ଅଛଇଁ ।
ପୃଥ୍ୱୀ ଥିଲେ ଭୋଗ କରିବୁ । ପୃଥ୍ୱୀ ଥିଲେ ସବୁ ଦେଖିବୁ ।
ସ୍ୱର୍ଗପୁର ବୈକୁଣ୍ଠପୁର । ଏ ଦେହେଁ ଭୋଗ ତାହିଁ ସାର ॥
ପୃଥ୍ୱୀ ଥିଲକୁ କର୍ମ ଧର୍ମ । ପାପ ପୁଣ୍ୟକୁ ଯେ ଜାଣିମ ॥
ପୃଥ୍ୱୀ ଥିଲେ ସକଳ ଜାଣି । ପୃଥ୍ୱୀ ଥିଲେଟି ସର୍ବ ମଣି ।
ପୃଥ୍ୱୀ ଯେଣଣ ତୁ ବହିଛୁ । ହସୁଛୁ ବସୁଛୁ ଶୋଇଛୁ ।
ନାନା କୌତୁକେ ବିହରୁଛୁ । ନାନାଦି କର୍ମକୁ ଦେଖୁଛୁ ।
ଦେହ ଗଲେ ତାହିଁ ରହିବୁ । ତା ଯେଣି ସଂସାର କରିବୁଁ ।
ଛପନ କୋଟି ଜୀବ ଗଣ । କି ଯେଣି ଗଲା କାଏ ପୁଣି ।
ପୃଥ୍ୱୀ ନ ଥିଲେ ଲୀଳା ତାହିଁ । ହେ ମନ ଚେତ ଏବେ ତୁହି ।
ନାମକୁ ଶବ୍ଦେ ଶନ୍ଦାକର । ତୋ ପୃଥ୍ୱୀ ହେବ ଅକ୍ରାମ୍ବର ।
ପୃଥ୍ୱୀ ଯେଣି ଅମରେ ଥିବୁ । ବ୍ରହ୍ମାଣ୍ଡ ଯାକରେ ଭ୍ରମିବୁ ।
ପୃଥ୍ୱୀ ସଙ୍ଗତେ ପୃଥ୍ୱୀ ହେବୁ । ସକଳ ସମାନ ଦେଖିବୁ ।
ଭ୍ରାନ୍ତ ଭାବେ ମନ ଦିଅ । ପୃଥ୍ୱୀକି ଯେଣି ଭୁଲିଥାଅ ।
ପୃଥ୍ୱୀ ଥିଲେଟି ସବୁ ଅଛି । ପୃଥ୍ୱୀ ଗଲେ କାହିଁ ନ ଗଛି ।
ପୃଥିବୀ ବ୍ରହ୍ମାଣ୍ଡ ଯାକରେ । ଯୋଟି ରହିଛି ପୃଥ୍ୱୀମାରେ ।
ଜଳରୁ ପୃଥିବୀ ଜନ୍ମିଲା । ଶୁଣ ସୁମତେ ନ ଭାବ ଲୀଳା ।
ମେରୁ ଆଦି ଯେତେ ପର୍ବତ । ପୃଥ୍ୱୀରେ ଅଛନ୍ତି ସମସ୍ତ ॥

ଅଶ୍ୱତ୍‌ଥ ଆଦ ଯେତେ ବୃକ୍ଷ । ପୃଥ୍ୱୀରେ ଅଛନ୍ତି ପ୍ରତ୍ୟକ୍ଷ ॥
ଚନ୍ଦ୍ରାଳୁ ବୃକ୍ଷଯାଏ ପୁଣି । ପୃଥ୍ୱୀରେ ସର୍ବେ ଛନ୍ତି ଜାଣି ॥
ସିଂହରୁ ଦଶିପୋକ ଯାଏ । ପୃଥ୍ୱୀରେ ହିନା ସତ ରହେ ॥
ଇନ୍ଦ୍ରଙ୍କଠାରୁ ଯେତେ ଦେବ । ପୃଥ୍ୱୀରେ ଅଛନ୍ତି ଏ ସର୍ବ ॥
ଜଡ଼ା ଗୁଡ଼ା ଚଳ ଅଚଳ । ଏ ଗୃହିଶାନ୍ତ ଏ ସକଳ ॥
ପୃଥ୍ୱୀ ଥିଲକୁ ସର୍ବ ରହୁ । ନୋହିଲେ ସର୍ବେ ନାଶ ଯାଇ ॥
ସପ୍ତ ସମୁଦ୍ର ଭୁହ ଜାଣ । ପୃଥ୍ୱୀ ଥିଲକୁ ରହେ ପୁଣ ॥
ଚଉଦ ବ୍ରହ୍ମାଣ୍ଡ ସହିତେ । ପୃଥ୍ୱୀ ଥିଲକୁ ଏ ସମସ୍ତେ ॥
ସପ୍ତ ପାତାଳ ସପ୍ତଦ୍ୱୀପ । ପୃଥ୍ୱୀ ଯେଜଣଟି ଅବ୍ୟକ୍ତ ॥
ପୃଥ୍ୱୀ ଥିଲକୁ ସର୍ବ ରହେ । ପୃଥ୍ୱୀ ଗଲେଟି କିଛୁ ନୋହେ ॥
ପୃଥ୍ୱୀରେ ଯେତେ ଜନ୍ମି ଛନ୍ତି । ଏହା ତ ଭେଦ ନ ଜାଣନ୍ତି ॥
ପୃଥ୍ୱୀ ନ ଥିଲେ ଜଳ କାହିଁ । ରହନ୍ତା ଶୁଣ ମୁଁ କହଇ ॥
ପୃଥ୍ୱୀ ଥିଲକୁ ଜଳ ପୁଣି । ତେଣୁ ବହଇରେ ସର୍ବ ଜାଣ ॥
ପୃଥ୍ୱୀରୁ ଜଳ ମେଘ ନେଇ । ବ୍ରହ୍ମାଣ୍ଡ ପାଳୁଛନ୍ତି ରହି ॥
ପୃଥ୍ୱୀ ନ ଥିଲେ ଜଳ କାହିଁ । ମେଘ ଅଣନ୍ତା ଜଳ କାହିଁ ॥
ପୃଥ୍ୱୀ ଥିଲକୁ ଜଳ ଜାଣ । ନୋହିଲେ ଜଳ କାହିଁ ପୁଣ ॥
ପୃଥ୍ୱୀ ନ ଥିଲେ ମେଘ କାହୁଁ । ଜଳ ଅଣନ୍ତା ଶୁଣ କାହୁଁ ।
ପୃଥ୍ୱୀ ଥିଲକୁ ଜଳ ରହି । ଖାଇ ବଞ୍ଚନ୍ତି ସର୍ବ ଦେହୀ ॥
ପୃଥ୍ୱୀ ଥିଲକୁ ଜଳ ରହେ । ତେଣୁଟି ସର୍ବ ଜାତ ହୋଏ ।
ଛପନକୋଟି ଜୀବ ଯେତେ । ପୃଥ୍ୱୀରେ ଅଛନ୍ତି ସମସ୍ତେ ॥
ପୃଥ୍ୱୀରେ ଯେତେ ରୂପ ହୋଇ । ତୋ ଦେହେ ଛନ୍ତି ତେତ ଭୁଇଁ
ପୃଥ୍ୱୀ ଭୂତଙ୍କ କଥା ଶୁଣି । ମନ ଆନନ୍ଦ ହୁଏ ଗୁଣି ॥
କହଇ ଅରକ୍ଷିତ ଦାସ । ପୃଥ୍ୱୀଭୂତଙ୍କ କଥା ରସ ॥
ଅହେ ସୁଜନମାନେ କହ । ପୃଥ୍ୱୀକିମ୍ବିଶ ନାମ ଧ୍ୟାଇ ॥
ନୋହିଲେ ପୃଥ୍ୱୀ ନାଶ ଯିବ । ଅଜାତି ଦେହ ନ ପାଇବ ॥

କେ ବୋଲେ ମଲେ ଜନ୍ମ ହୋଇ । ଏ ମିଛ ସତ କେବେ ନୋହି ॥
ପୃଥ୍ୱୀ ଭୂତଙ୍କ କଥାଗୁଣ । ବୟାନବେ ପଦରେ ପୂର୍ଣ୍ଣ ॥

ଇତି ଶ୍ରୀ ମନ-ଚୈତନ୍ୟସମ୍ବାଦେ ମହାମଣ୍ଡଳଗୀତାୟାଂ
ପୃଥ୍ୱୀଭୂତମହିମା ବର୍ଣ୍ଣନେ ନାମ
ପ୍ରଥମୋଽଧ୍ୟାୟଃ ।

---

## ଦ୍ୱିତୀୟ ଅଧ୍ୟାୟ

କହଇ ମନ ଶୁଣ ତୁହି । ପୃଥ୍ୱୀ ମହିମା ଶୁଣିଲଇ ॥
ଜଳର ମହିମା କହିବ । ମୋ ମନୁ ସଂଶୟ ଦହିବ ॥
ମୁହିଁ ତୋ ଚରଣେ ଶରଣ । ମାୟା ନ କର କହି ପୁଣ ॥
ତୁମ୍ଭର ମାୟା ମୋତେ ନୋହୁ । ତୋ ନାମେ ମୋର ମନ ରହୁ ॥
ତୋ ନାମ ନିତ୍ୟେ ଚିନ୍ତୁଥିବି । ତୋ ଭାବେ ମନ ମୋ ରଞ୍ଜିବି ॥
ଏହି ଦୟାଟି ମୋତେ ଥିବ । ତୋ ମାୟା କେବେ ନ ଲାଗିବ ॥
ଚୈତନ୍ୟ କହେ ମନ ଶୁଣ । ତୁ ଯାହା ପଚାରିଲୁ ପୁଣ ॥
ଜଳ ଭୂତଙ୍କ କଥା କେହି । ବ୍ରହ୍ମାଣ୍ଡେ ଜାଣି ପାରେ ନାହିଁ ॥
ଜଳର ମହିମା କହୁତେ । କହିବି ଶୁଣ ଶୁଦ୍ଧ ଚିତ୍ତେ ॥
ଅଗ୍ନିରୁ ଜଳ ଜାତ ହୋଇ । ଏହା ଯେ ନ ଜାଣନ୍ତି କେହି ॥
ଜଳର ମହିମା ତୁ ଶୁଣ । ସେ ସର୍ବ ଘଟେ ଥାଇ ଜାଣ ॥
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ହୋଇ । ଜଳଟି ଅଛି ଜାଣ ତୁହି ॥
ସପ୍ତ ବ୍ରହ୍ମାଣ୍ଡ ଦ୍ୱୀପ ସାତ । ଜଳଟି ଘୋଟିଛି ସମସ୍ତ ॥
ଅବାଣୁଁ ମହାପାଏ ସେହି । ପୂର୍ବରୁ କେହି ନ ଜାଣଇ ॥
ଜୀବେ ଅଜୀବେ ପୂରିଥାଇ । ଜାତ କରୁଛି ସବୁ ସେହି ॥
ଛପନକୋଟି ଜୀବ ଯେତେ । ଜଳରୁ ଜାତ ଏ ସମସ୍ତେ ॥

ହେ ମନ ତୁହି ପଚାରିଲୁ । ଜଳର ମହିମା ଶୁଣିଲୁ ।
ଜଳଟି ସର୍ବ ଜାତ କରେ । ଜଳଟି ସମସ୍ତ ସଂହରେ ।
କୀଟ ପତଙ୍ଗ ତରୁ ତୃଣ । ଜଳରୁ ଜାତ ଏ ପ୍ରମାଣ ॥
ସୁନାରୁ ହୀରା ପର୍ଯ୍ୟନ୍ତେ । ଜଳରୁ ଜାତ ଏ ସମସ୍ତେ ।
ନୀଳରୁ ରଙ୍ଗ ଯାଏ ଜାଣି । ଜଳରୁ ସମସ୍ତ ଭିଆଣି ॥
ଷଡ଼ ଋତୁଟି ଜଳୁଁ ଜାତ । ଶୁଣ ସୁମନ ଦେଇ ଚିତ୍ତ ।
ନାନାଦି ପୁଷ୍ପ ଜଳୁଁ ଜାଣ । ନାନାଦି ଫଳ ଜଳୁଁ ପୁଣ ।
ରକ୍ତ ମାଂସ ଯେ ଅସ୍ଥି ଚର୍ମ । ଜଳରୁ ସମସ୍ତ ଭିଆଣ ॥
ଜଳ ଶୁଖିଲେ ହଂସ ଜଡ଼ । ମଜ୍ଜା ଶୂନ୍ୟରେ ଜୀବ ଘୁଡ଼ ॥
ଜଳ ଥିଲେଟି ହଂସ ଖେଳେ । ମୀନ ବି ଥାଇ ଜଳ ସ୍ଥଳେ ॥
ବକ ଯେ ମୀନକୁ ଚାହାଁଣ । ଚଢ଼ି ସେ ବସି ଥାଇ ଜାଣି ।
ପୋଖରୀ ଶୁଖିଲେ ଯେ ତନ୍ନ । ଚଳନ୍ତି ଯେଝା ଗୁଣ ଘେନ ।
ଜଳ ଥିଲେଟି ସର୍ବେ ଥାନ୍ତି । ଅନନ୍ତେ ଜଳେ ବିହରନ୍ତି ॥
ଜଳ ଯେବେ ମନେ ପାଞ୍ଚଇ । ଏମାନେ ଥିବେ କାହା ପାଇଁ ।
ଏମନ୍ତ ବୋଲି ପ୍ରଳୟରେ । କେହି ନ ରହନ୍ତି ଜଳରେ ।
ସୂର୍ଯ୍ୟ ମେଘେ ବୃଷ୍ଟି କରନ୍ତି । ପ୍ରଳୟେ ପୃଥ୍ୱୀକି ହରନ୍ତି ।
ଅଣିଗୁଣ ମୂରତି ଧରି । ପବନ ବହେ ତନ ପୁରି ।
ପ୍ରଚଣ୍ଡ ଘୋର ନାଦ କରେ । ଅଗ୍ନି ଜଳଇ ତନପୁରେ ॥
କାରୁଣ୍ୟ ଜଳ ତେଜ ଘାତେ । ସମସ୍ତେ ହୁଅନ୍ତି ନିପାତେ ।
ଏମନ୍ତେ ପୃଥ୍ୱୀ ନାଶ ଯାଇ । ଶୁଣ ସୁମନ ଚିତ୍ତ ଦେଇ ।
ଜଳ ଯେବେ ମନେ ପାଞ୍ଚଇ । ପୃଥିବୀ ରଖିଥିବ ମୁହିଁ ।
ପୃଥ୍ୱୀକି ସଦାକାଳେ ଥାଇ । ଅନନ୍ତେ ସମସ୍ତେଟି ରହି ॥
ନୋହିଲେ ଯଶ ନାହିଁ ଜାଣ । ଜଳର ଏମନ୍ତଟି ଗୁଣ ॥
ଜଳଭୂତଙ୍କ କଥା ମୁହିଁ । କହୁ ଯେ ତୋତେ କହିଲଇଁ ॥
ତାହାଙ୍କ ଗୁଣ ତନପୁରେ । କେ ଜାଣେ ଦେବ ସୁର ନରେ ।

ଜଳ ସଙ୍ଗତେ ଜଳ ହେଲୁ । ସଚଳ ସମାନ ଦେଖିଲୁ ।
ତେବେ ଅମର ହେଲୁ ଜାଣ । କହିଲି ତୋତେ ମୁଁ ପ୍ରମାଣ ।
ମନ ଶୁଣି ଅନନ୍ଦ ହୋଇ । ବୋଲଇ କର ବାହୁ ବାହୁ ।
କହଇ ଅରକ୍ଷିତ ଦାସ । ଜଳର ମହିମା ଅଶେଷ ।
ଅହେ ସୁଜନମାନେ ଶୁଣ । ଜଳରୁ ସର୍ବ ଜାତ ଜାଣ ।
ତାହାକୁ ମନେ ଭାବ ଭଣି । ନତବେ ପୃଥ୍ୱୀରେ ନାହିଁ ଦୁଃଖୀ ।
ଜଳଭୂତ ମହିମା ମୁହିଁ । ଅଠର୍କଳଣ ପଦ କହି । ୮ ।

ଇତି ଶ୍ରୀ ମନ-ଚୈତନ୍ୟ ସମ୍ବାଦେ ମହାମଣ୍ଡଳ ଗୀତାୟାଂ ଜଳଭୂତ କଥା ବର୍ଣ୍ଣନେ ନାମ ଦ୍ୱିତୀୟୋଽଧ୍ୟାୟଃ । ୨ ।

---

## ତୃତୀୟ ଅଧ୍ୟାୟ

ମନ କହୁଛି ପ୍ରଭୁ ଶୁଣ । ମୋ ଦୋଷ ନ ଧରିବ ପୁଣ ।
ଜଳର ମହିମା ଶୁଣିଲି । ମନେ ମୁଁ ଅଶ୍ଚର୍ଯ୍ୟ ହୋଇଲି ।
ଅଗ୍ନିଭୂତଙ୍କ କଥା କହ । ଯେବେ ତେଜିବି ମାୟାମୋହ ।
ଅଗ୍ନିର ମହିମା ଶୁଣିବି । ତେବେ ମୁଁ ଭ୍ରାନ୍ତି ଯେ ଛାଡ଼ିବି ।
ନୋହିଲେ ଭ୍ରାନ୍ତି ମୋ ନ ଯାଇ । କହ ତୁ ମୋତେ ଦୟା ବହି ।
ହେ ପ୍ରଭୁ ମୁଁ ତୁମ୍ଭ କିଙ୍କର । ମୋହର ଦୋଷ କ୍ଷମାକର ।
ମୁହିଁ ତ ସଦା ଅପରାଧୀ । ତୁମ୍ଭେ ତ କରୁଣା ବାରିଧି ।
ହେ ପ୍ରଭୁ ମାୟା ତୁ ନ କର । କହ ଅଗ୍ନିର ସମାଚାର ॥
ଯେବେ ମୋ ଠାରେ ଦୟାଥିବ । ଅଗ୍ନିଭୂତଙ୍କୁ ଯେ କହିବ ।
ମନ ମୁଖରୁ ଏହା ଶୁଣି । କର୍ମା ବିଷାଦ ହେଉ ପୁଣି ।
ତୁହି ସର୍ବ୍ବିତି ଏ ଦେହରେ । ରହଇ ରାବ ଦିବସରେ ।
ଅନ୍ତରୁ ଦୟା ତୋର ନାହିଁ । ଚଞ୍ଚଳ ଇଚ୍ଛା ମୋତେ ଛାଡ଼ି ତୁହି ।
ପ୍ରକୃତି ସଙ୍ଗରେ ଭ୍ରମିଲୁ । ମୋତେ ତୁ ସେବା ନ ପାରିଲୁ ।

ତେଣୁ ସିନା ମୁଁ ମାୟା କରେ । ନୋହିଲେ ଦୟା ତୋହଠାରେ
ଏବେ ତୁ ମୋର ନାମ ଧର । ତେବେ ତୁ ହେବୁ ଅଜ୍ରାମ୍ବର ।
ନୋହିଲେ ଯିବୁ ଭ୍ରମ ହୋଇ । ମନ ବୋଲଇ ବାହୁ ବାହୁ ।
ତୁମ୍ଭର ଦୟା ଯେବେ ହେବ । ତେବେ ଏ ନାମ ଚହ୍ନିଯିବ ।
ନୋହିଲେ ମୁଁ କିସ ଚହ୍ନିବ । ତୁମ୍ଭ ଦୟା ହେଲେ ଜାଣିବ ।
ହେ ପ୍ରଭୁ ମୋତେ ଦୟାକର । ଜଣାଉଅଛୁ ମୁଁ ଘମୁର ॥
ଅଗ୍ନି ଭୂତଙ୍କ କଥା କହ । ହେ ପ୍ରଭୁ ମୋତେ ଦୟା ବହ ॥
ହେ ମନ ଶୁଣ ସ୍ଥିର ହୋଇ । ଅଗ୍ନି ଭୂତଙ୍କ କଥା ଏହୁ ।
ପବନ ଅଗ୍ନି ଜାତ ହୋଇ । ଶୁଣ ସୁମନ ଚିତ୍ତ ଦେଇ ॥
ଅଗ୍ନି ଟି ସର୍ବ ଭୂତେ ପୂର । ଜୀବେ ଅଜୀବେ ସମ ସର ॥
ସକଳ ଜୀବ ହୃଦେ ଥାଇ । ତେଜ ସ୍ୱରୂପ ପ୍ରକାଶଇ ।
ତାହାଙ୍କ ତେଜ ନ ଲଚିଲେ । କେ ନ ପାରଇ ବଞ୍ଚି ଭଲେ ॥
ଅଗ୍ନିଙ୍କ ତେଜ ଲାଗି ପୁଣି । ସକଳ ପାପ ହୁଏ ଜାଣି ।
ଅଗ୍ନି ଟି ସର୍ବ ଘଟେ ଥାଇ । ତା ଭାବ କେହି ନ ଜାଣଇ ॥
ଛ ାନ କୋଟି ଜୀବ ଯେତେ । ଅଗ୍ନି ବହରେ ସର୍ବ ଗାତେ ।
ଅଗ୍ନି ସଙ୍ଗତେ ଜଳ ଥାଇ । ଅଗ୍ନି ଟି ଜଳେ ଗୋପ୍ୟ ହୋଇ ।
ପୃଥ୍ୱୀ ସଙ୍ଗତେ ଅଗ୍ନି ମିଶି । ବହରେ ଜାଣ ଦିବା ନିଶି ।
ଅଗ୍ନି ସକାଶେ ପୃଥ୍ୱୀ ବହେ । ନୋହିଲେ ଜଳେ ବୁଡ଼ିଯାଏ ।
ଅଗ୍ନିଙ୍କ ତେଜ ବଳଘାତେ । ଜଳ ଯେ ଶୁଖଇ ତୁରିତେ ।
ଜଳ ଚଳିଲେ ଅଗ୍ନି ଛପେ । ପୃଥ୍ୱୀଟି ଲସେ ତାର କୋପେ ।
ଏ ଦୁହେଁ ଯଦି ସମ ଥାନ୍ତି । ପୃଥ୍ୱୀକୁ କେହି ନ ନାଶନ୍ତି ।
ଏ ଦୁହେଁ ବାଦ ଯେବେ କଲେ । ପୃଥ୍ୱୀଟି ନାଶ ଯାଇ ଭଲେ ।
ଏ ଦୁହେଁ ପୃଥ୍ୱୀର କାରଣୀ । ଏହା ନ ଜାଣେ ମୂର୍ଖ ପ୍ରାଣୀ ।
ହେ ମନ ପଚାରିଲୁ ତୁହି । ଅଗ୍ନି ମହିମା ଦେଲି କହି ।
ଅଗ୍ନି ଟି ସର୍ବ ଭୂତେ ଥାଇ । ଜୀବେ ଅଜୀବେ ବହରଇ ।

ଛପନକୋଟି ଜୀବ ଯେତେ । ଅଗ୍ନି ଟି ବାହରେ ଜଟତେ ॥
ଜଳ ନଚଳ ଜଡ଼ା ଗୁଡ଼ା । ନାହି କେ ହୋଇ ଅଗ୍ନି ଛଡ଼ା ।
ନବଖଣ୍ଡ ପୃଥିବୀ ଜାଣ । ଅଗ୍ନି ଘୋଟିଛି ସର୍ବ ସ୍ଥାନ ।
ଚଉଦ ବ୍ରହ୍ମାଣ୍ଡ ସହିତେ । ଅଗ୍ନି ବାହରେ ସେ ଗୁପତେ ।
ହେ ମନ ଅଗ୍ନିର ମହିମା । କେ କହିପାରେ ତାର ସୀମା ।
ହେ ମନ ପରୁଣ୍ଡିଲୁ ତୁହି । ଅଗ୍ନି ମହିମା କହିଲଇଁ ॥
ଅଗ୍ନି ସଙ୍ଗତେ ମିଶିଥିବୁ । ତେବେ ଅଜାମରେ ରହିବୁ ।
ହେ ମନ ଅଗ୍ନିଭାବେ ବସ । ନମଇଁ ଅବହିଁ ଦାସ ॥
ଅହେ ସୁଜନମାନେ କହି । ଅଗ୍ନିଟି ସର୍ବଭୂତେ ଥାଇ ॥
ଏ ଯେଉଁ ସମାନ ଦେଖିବ । ଭସ୍ମକୁ କାହିଁ ନ ରଖିବ ।
ଅଗ୍ନିଙ୍କ ମହିମା ଯେ ଶୁଣି । ତରିବ ଭବ ତରଙ୍ଗିଣୀ ।
ତାହାଙ୍କ ଗୁଣ ତନ୍ତ୍ରପୁରେ । କେହି ନ ଜାଣନ୍ତି ସଂସାରେ ॥
ଅଗ୍ନିଭୂତ ମହିମା ଗୁଣ । ଏକାବନ ପଦରେ ପୂର୍ଣ୍ଣ ।୫୧।

ଇତି ଶ୍ରୀ ମନଚୈତନ୍ୟ ସମ୍ବାଦେ ମହାମଣ୍ଡଳଗୀତାୟାଂ ଅଗ୍ନିଭୂତ ମହିମା ବର୍ଣ୍ଣନେ ନାମ ତୃତୀୟୋଽଧ୍ୟାୟଃ । ୩ ।

---

## ଚତୁର୍ଥ ଅଧ୍ୟାୟ

ମନ କହଇ ହେ ଚୈତନ୍ୟ । ଅଦ୍ଭୁତ ଅଗ୍ନିର ଆଖ୍ୟାନ ।
ତାହାର ଏମନ୍ତ ମହିମା । କେହି ନ ଜାଣେ ଗୁଣସୀମା ॥
ଶୁଣି ମୁଁ ଅସମ୍ଭବ ମଣି । ଆଉ କଥା ଏ କହ ପୁଣି ॥
ପବନ ଭୂତ କଥା କହ । ହେ ପ୍ରଭୁ ଦୟା ମୋରେବହ ॥
ପବନ ଭୂତ କାହୁଁ ଜାତ । ମୋତେ କହିବା ପ୍ରାଣନାଥ ।
ପବନ ଭୂତଙ୍କ ମହିମା । ଶୁଣିବ ତୁମ୍ଭ ମୁଖୁ ସିନା ॥
ମନ ମୁଖରୁ ଏହା ଶୁଣି । ତାର ମହିମା କେ ନ ଜାଣି ।

ବ୍ରହ୍ମାଦି ଦେବାସୁର ନରେ । ତାଙ୍କୁ ଦେଇ ଜାଣିବ ସଂସାରେ ॥
ଯାହାର ରୂପବର୍ଣ୍ଣ ନାହିଁ । ତାଙ୍କୁ ବା କେ ଜାଣିବଟି କହି ॥
ତୁ ଯେବେ ପଚାରିଲୁ ଶୁଣ । କିଛି କହିବା ତାଙ୍କ ଗୁଣ ॥
ପବନ ଭୂତ ତଥା ତୁହି । ଶୁଣ ତୁ ସାବଧାନ ହୋଇ ॥
ଅକାଶେଁ ପବନ ଜନ୍ମିଲା । ବ୍ରହ୍ମାଣ୍ଡପାତରେ ଘୋଟିଲା ॥
ସକଳ ଜୀବ ହୃଦେ ଥାଇ । ଗୁପ ଦ୍ୱାରରେ ବହୁଛଇ ॥
ଛୟାନବେ କୋଟି ଜୀବ ପୁଣ । ପବନ୍ତୁ ଜନ୍ମିଲେ ସେ ଜାଣ ॥
ସକଳ ଜୀବ ଦେହେ ଥାଇ । ନ ଲଗି ନଳରେ ରହଇ ॥
ସକଳ ଜୀବର ଜନମ । ହୋଇଲୁ ଲଟି ନାହିଁ ଯମ ॥
ସକଳ ଜୀବ ପିତା ସେହି । ହୋଇଲୁ ଭାବ ମନେ ତୁହି ॥
ପୃଥ୍ୱୀ ଜଳ ଅଗ୍ନି ତନ୍ମ । ପବନ ଅଂଶେ ଚଳେ ପୁଣି ॥
ଚନ୍ଦ୍ର ସୂର୍ଯ୍ୟ ଯେ ତାରାଗଣ । ପବନ ବଳେ ଚଳେ ଜାଣ ॥
ଗ୍ରହ ମେଘ ଗ୍ରହ ବେଦହିଁ । ପବନ ବଳେ ଚଳେ ସେହି ॥
ଇନ୍ଦ୍ରଙ୍କ ଅଦି ଯେତେ ଦେବ । ପବନ ଅଂଶେ ଚଳେ ସର୍ବ ॥
ମେରୁ ଆଦି ଯେତେ ପର୍ବତ । ପବନ ସବୁଠାରେ ସ୍ଥିତ ॥
ଅଶ୍ୱତ୍ଥ ଆଦି ଯେତେକ ବୃକ୍ଷ । ପବନ ବହଇ ପ୍ରତ୍ୟକ୍ଷ ॥
କାକରୁ ଗରୁଡ ପର୍ଯ୍ୟନ୍ତେ । ପବନ ରହଇ ପ୍ରତ୍ୟକ୍ଷେ ॥
ସିଂହବ୍ୟାଘ୍ର ଦନ୍ତିପୋକ ଯାଏ । ପବନ ରହଇ ସର୍ବ ଦେହେ ॥
ଚଣ୍ଡାଳୁ ବ୍ରହ୍ମଯାଏ ଜାଣ । ପବନ ରହେ ସର୍ବସ୍ଥାନ ॥
ସ୍ଥାବର କୀଟ ପତଙ୍ଗ । ଜଙ୍ଗମ ସହିତେଣ କହ ॥
ଏ ଗୁହ୍ୟଯୋନି ଜୀବଗଣ । ପବନ ସବୁ ଦେହେଁ ଜାଣ ॥
ପିତୃଗଣ ଯମଗଣହିଁ । ପବନ ବଳେ ଜାଣ ରହି ॥
ଦେବଗଣ ରାକ୍ଷସ ଗଣ । ପବନ ବଳେ ଚଳେ ଜାଣ ॥
ଯେ ଇନ୍ଦ୍ରଗଣ ନାଗ ଭ । ପବନ ବଳେ ଚଳେ ସେହି ॥
ଯୋଗୀଗଣ ଯେ ପିତୃଗଣ । ପବନ ବଳେ ଚଳେ ଜାଣ ॥

ଚଳନ୍ତା ଚୌଦକୋଟି ଜୀବ । ପବନ ଅଶେଷ ଚଳେ ସର୍ବ ।
ଜୀବ ଚଉଦ କୋଟି ଛନ୍ତି । ପବନ ଅଶେଷ ସେ ବହନ୍ତି ।
ବୁଡ଼ା ଚଉଦକୋଟି ଜୀବ । ପବନ ଅଶେଷ ବୁଡ଼େ ସର୍ବ ।
ନିଷ୍ଟଳ ଚୌଦକୋଟି ଛନ୍ତି । ପବନ ଅଶେଷ ସେ ବହନ୍ତି ।
ଏମନ୍ତ ଛପନ କୋଟିହ । ପବନ ଅଶେଷ ସର୍ବେ ବହ ।
ସ୍ୱର୍ଗ ମର୍ତ୍ତ ପାତାଳ ପୁଣ । ପବନ ଅଶେଷ ବହେ ଜାଣ ।
ଚଉଦପୁର ଗୃହଖାନ । ପବନ ସବୁଠାରେ ଭ୍ରମି ।
ଜଳ ଅନଳ ଯେ ପୃଥିବୀ । ପବନ ସବୁଠାରୁ ଦ୍ରବି ।
ଖେଦଇ ବ୍ରହ୍ମାଣ୍ଡ ମଧ୍ୟରେ । ବହୁଛି ସବୁରି ଦେହରେ ।
ଜୀବେ ଅଜୀବେ ସେ ପବନ । ଘୋଟିଛି ବ୍ରହ୍ମାଣ୍ଡରେ ଜାଣ ।
ରେଣୁ ପଡ଼ିବା ଛାଡ଼ ନାହିଁ । ସପ୍ତ ବ୍ରହ୍ମାଣ୍ଡେ ଘୋଟି ରହି ।
ଷଡ଼ ଋତୁଟି ଷଡ଼ ରସ । ପବନ କରଇ ପ୍ରକାଶ ।
ନବ ରନ୍ଧ୍ରଟି ଅଷ୍ଟ ଧାତୁ । ପବନ ସବୁଠାରେ ହେତୁ ।
ବାର ମାସଟି ସାତବାର । ପବନ ସବୁଠାରେ ସାର ।
ବାର ଚନ୍ଦ୍ର ଯୋଗ କରଣ । ପବନ ସବୁଠାରେ ଜାଣ ।
ନକ୍ଷତ୍ର ନବଗ୍ରହ କହ । ପବନ ସବୁଟି କରଇ ।
ଲୀଳା ନିମନ୍ତେ ଯେତେ ଜାତ । ସବୁଟି ପବନ ସଞ୍ଚିତ ।
ହସ୍ତ ପାଦ ଶିର କର୍ଣ୍ଣହିଁ । ନୟନ ନାସା ମୁଖ କହି ।
ହୃଦାଦ କଟି ନାହିଁ ଜାଣ । ଅଜ୍ୟୋତ ଅବର୍ଣ୍ଣ ସେ ପୁଣ ।
ରୂପ ବର୍ଣ୍ଣ ଶବ୍ଦହିଁ ନାହିଁ । ବ୍ରହ୍ମାଣ୍ଡେ ଘୋଟିଅଛି ସେହି ।
ଏହି ଦେହରେ ସେ ପବନ । ବାହରେ ବାହ ଦବସେଣି ।
ଖଞ୍ଜିଲୁ ଖଞ୍ଜି ଗୃହେ ସେହି । ଦଣ୍ଡେ ବିଶ୍ରାମ ଛାଡ଼ ନାହିଁ ।
ଛୁମ ଛୁମକେ ବାହାରୁଛି । ଏ ରୂପେ ପୃଥିବୀ ଧରିଛି ।
ହସି କାନ୍ଦଣ ଖେଳେ ସେହି । ଶୁଆଇ ଉଠାଇ ଚଳାଇ ।
ବସାଇ ଖେଳାଇ ଉଠାଇ । ବୁଢ଼ାଇ ଖେଳାଇ ଜୀଅଇ ।

ଯେବେ ଏ ଦେହ ଖଣ୍ଡିଯିବ । ପୃଥ୍ୱୀ ରସାତଳେ ପଡ଼ିବ ।
ପବନ ବିନା ପ୍ରାଣେ ଧର । ଗୁଲ୍‌ମିଛ ଯନ୍ତ୍ର କୁଟ ଭର ।
ପବନ ବଳେ ଜନ୍ମ ହୋନ୍ତି । ପବନ ଛପିଲେ ମରନ୍ତି ।
ଖଟକ କୂଟ ମାୟାଙ୍କର । ସମସ୍ତେ ଅଛନ୍ତି ଅଟକାର ।
ମାୟାରେ ସର୍ବ ଜୀବ ଖେଳେ । ନ ଜାଣେ ବ୍ରହ୍ମା ଦିଗପାଳେ ।
ଏହାଙ୍କଠାରୁ ବଡ଼ ନାହିଁ । ତା ମାୟା କେ ପାରିବ କହି ।
ପବନ ଭୂତ କଥା ତୋତେ । ମୁଁ କିସ କହିବି ଯୁକତେ ।
ତା କଥା ଅତି ଅଗୋଚର । ଲକ୍ଷା ସ୍ୱରୂପ ବର୍ଣ୍ଣିବାର ।
ଏତେ଼ସେତେ଼ସେ କଳା ନୋହେ । ବ୍ରହ୍ମାଣ୍ଡେ ଲିଟ ସେହୁ ଥାଏ ।
ହେ ମନ ପବନ ଭୂତଙ୍କୁ । କହିଲି ଭାବ ହେ ତାହାଙ୍କୁ ।
ପବନ ସଙ୍ଗ ମିଶିଥିବୁ । ତେବେ ଅଜ୍ଞାମରେ ରହିବୁ ।
ପବନ ଥିଲେ ଦେହ ରହି । ହେ ମନ ଚେତ ଏବେ ତୁହି ।
ମନ ଚୈତନ୍ୟ ମୁଖୁଁ ଶୁଣି । ବୋଲନ୍ତି ମନେ ମନେ ଗଣି ।
ପବନଭୂତଙ୍କ ଚରିତ । ଶୁଣି ମୁଁ ହେଲି ଅଚମ୍ଭିତ ।
ହେ ପ୍ରଭୁ ମାୟା କର ନାଶ । ଜଣାଇ ଅରକ୍ଷିତ ଦାସ ।
ଅହେ ସୁଜନମାନେ ଶୁଣ । ପବନ ଭାବ ମନେ ଗୁଣ ।
ତା ଭାବ ମନରେ ଭାବିବ । ଏ ଘୋର ସଂସାରୁ ତରିବ ।
ନୋହିଲେ ତେବେ ନ ତରିବ । ତା ଭାବ ମନେ ଧ୍ୟାଉଥିବ ।
ପବନଭୂତଙ୍କ ଭାବିବ । ହେଳା କଲେଟି ମାଧବେବ ।
ପବନଭୂତଙ୍କର ଗୁଣ । ସତସ୍ତରି ପଦେ ସମ୍ପୂର୍ଣ୍ଣ । ୭୭ ।

ଇତି ଶ୍ରୀ ମନଚୈତନ୍ୟ ସମ୍ବାଦେ ମନ୍ତ୍ରମଣ୍ଡଳ ଗୀତାୟାଂ ପବନ ଭୂତ ମହିମା ବର୍ଣ୍ଣନେ ନାମ ଚତୁର୍ଥୋଽଧ୍ୟାୟଃ ।

# ପଞ୍ଚମ ଅଧ୍ୟାୟ

ଅହେ ଚୈତନ୍ୟ ବ୍ରହ୍ମ ତୁମ୍ଭେ । କଥାଏ ଜଣାଉଛୁ ଏବେ ॥
ପବନ ଭୂତଙ୍କୁ କହିଲେ । ମନୁ ମୋ ସଂଶୟ ଦହିଲେ ॥
ଏବେ ଆକାଶ ଭୂତ କଥା । ଶୁଣି ମୋ ମନୁ ଯାଉ ବ୍ୟଥା ॥
ଆକାଶ କାହୁଁ ଜାତ ହୋଇ । ମୋ ମନୁ ଭ୍ରାନ୍ତି ଫେଡ଼ ତୁହି ॥
ଆକାଶ କଥା ଅଗୋଚର । କହ ମୋ ଭ୍ରମ ହେଉ ଦୂର ॥
ହେ ମନ ଆକାଶ ମହିମା । କହିଲେ ନ ସରଇ ସୀମା ॥
ଆକାଶ ଭୂତ କଥାକୁହିଁ । କେ ତାହା କଳି ନ ପାରଇ ॥
ତାକୁ କେ କଳବ ମର୍ତ୍ତ୍ୟରେ । ଶୁଣ କହିବା କିଛି ତୋରେ ॥
ମହାଶୂନ୍ୟରୁ ଯେ ଆକାଶ । ଜାତ ହୋଇଲଟି ଅଶେଷ ॥
ଆକାଶ ଅଦ୍ଭୁତ ମହିମା । କହିଲି ତାଙ୍କ ଭାବ ସିନା ॥
ଆକାଶ ବ୍ରହ୍ମାଣ୍ଡେ ଘୋଟିଛି । କାହିଁ ନ ଲାଗେ ସର୍ବେ ଗଛି ॥
ମହାଶୂନ୍ୟରୁ ଯେ ଆକାଶ । ଜାତ ହୋଇଲଟି ଅଶେଷ ॥
ଆକାଶଭୂତଙ୍କ ମହିମା । କହିଲି ଭାବ ତାଙ୍କ ସିନା ॥
ଆକାଶ ଅକାର ଅଟଇ । ତା ଗର୍ଭେ ସର୍ବ ଅଛି ରହି ॥
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଜାଣ । ତା ଗର୍ଭେ ସର୍ବେ ଛନ୍ତି ପୁଣ ॥
ଚଉଦ ବ୍ରହ୍ମାଣ୍ଡ ସହିତେ । ତା ଗର୍ଭେ ଅଛନ୍ତି ସମସ୍ତେ ॥
ସପ୍ତ ସମୁଦ୍ର ସ୍ୱର୍ଗ ସପ୍ତ । ତା ଗର୍ଭେ ଅଛନ୍ତି ସମସ୍ତ ॥
ନବଦ୍ୱୀପ ସର୍ବ ପୃଥିବୀ । ତା ଗର୍ଭେ ସର୍ବେ ଛନ୍ତି ଭାବି ॥
ଜଳ ପବନ ଅଗ୍ନି ମହୀ । ତା ଗର୍ଭେ ଅତଯାତ ହୋଇ ॥
ଗ୍ରହମେଘ ଯେ ତାରାଗଣ । ତା ଗର୍ଭେ ଅତଯାତ ଜାଣ ॥
ଗ୍ରହବେଦ ଝଡ଼ ରହୁହିଁ । ତା ଗର୍ଭେ ଅତଯାତ ହୋଇ ॥
ଚନ୍ଦ୍ର ସୂର୍ଯ୍ୟଟି ଦୁଇଦୀପ । ତା ଗର୍ଭେ ଜଳଇ ଅମାପ ॥
ସଂସାର ଖେଳ ପାଇଁ ଜାଣ । ଚନ୍ଦ୍ର ସୂର୍ଯ୍ୟ ତହିଁ ଭ୍ରମଣ ॥

ଜଳ ପବନ ଅଗ୍ନି ମହୀ । ଲୀଳା ନିମନ୍ତେ ଭ୍ରମେ ସେହି ॥

ଆକାଶ ଗର୍ଭେ ଲୀଳା କରି । ସମସ୍ତ ଅଛଇ ଅବୋଧ ।

ଛପନ କୋଟି ଜୀବ ଯେତେ । ତା ଗର୍ଭେ ଅଛନ୍ତି ସମସ୍ତେ ।

ଇନ୍ଦ୍ରଙ୍କଠାରୁ ଯେତେ ଦେବ । ତା ଗର୍ଭେ ଅଛନ୍ତି ଏ ସର୍ବ ॥

ମେରୁ ଆଦି ଯେତେ ପର୍ବତ । ତା ଗର୍ଭେ ଅଛନ୍ତି ସମସ୍ତ ॥

ଅଶ୍ୱତ୍ଥ ଆଦି ଯେତେ ଯେତେ । ତା ଗର୍ଭେ ଅଛନ୍ତି ପ୍ରତ୍ୟକ୍ଷେ ॥

ଚନ୍ଦ୍ରାର୍କ ବ୍ରହ୍ମାଏ ପୁଣି । ତା ଗର୍ଭେ ଅଛନ୍ତି ଏ ଜାଣି ॥

ସିଂହରୁ ଦଶିପୋକ ଯାଏ । ତା ଗର୍ଭେ ଅତଯାତ ହୁଏ ॥

ଜଡ଼ା ବୁଡ଼ା ଚଳ ନିଚଳ । ତା ଗର୍ଭେ ହୁଅନ୍ତି ପ୍ରବଳ ॥

ଆକାଶ ଭୂତ କଥା ଯେତେ । କହିଲେ ନ ସରେ କାହିଁତେ ॥

ଆକାଶ ଭୂତ କଥା ଶୁଣ । ତା ଗର୍ଭେ ଜନ୍ମ ମୃତ୍ୟୁ ଜାଣ ।

ମହାଶୂନ୍ୟରୁ ଜାତ ସେହି । ଆକାଶୁ ପବନ ଜନ୍ମଇ ।

ପବନୁ ଅଗ୍ନି ଜାତ ପୁଣି । ଅଗ୍ନିରୁ ଜଳ ଜାତ ଜାଣି ॥

ଜଳରୁ ପୃଥିବୀ ଜନ୍ମିଲା । ସଂସାର ଖେଳ ଲଗାଇଲା ॥

ମହାଶୂନ୍ୟରୁ ପଞ୍ଚଭୂତ । ଜାତ ହୋଇଛନ୍ତି ଏ ସମସ୍ତ ॥

ଏ ପଞ୍ଚଭୂତ ଭିନ୍ନ ଭିନ୍ନ । ନୁହେଟି ଶୁଣ ହୋ ସୁମନ ।

ଲୀଳା ନିମନ୍ତେ ଭିନ୍ନ ହେଲେ । ସଂସାରେ ଖେଳ ଲଗାଇଲେ ॥

ଖେଳ ସରିଲେ ସର୍ବେ ଯାନ୍ତି । ଏକା ଅଙ୍ଗରେ ସେ ଚଳନ୍ତି ॥

ମହାଶୂନ୍ୟରେ ସେ ମିଶାଣି । ଏକା ଅଙ୍ଗରେ ସେ ଗୋପ୍ୟାନ ।

ହେ ମନ ପଞ୍ଚଭୂତ ଗୁଣ । କେହି ନ ଜାଣନ୍ତି ତା ଗୁଣ ।

ତୋଠାରେ ମୋର ଦୟା ଯେଣୁ । ପଚାରିଲେ ତେ କହେ ତେଣୁ ।

ତୁମ୍ଭ ଅନ୍ତର ଭେଦ ନାହିଁ । ତେଣୁ ମୁଁ ତୋତେ କହୁଲଇଁ ।

ଆକାଶ ଭୂତ ସଙ୍ଗେ ମିଶ । ତେବେ ପାଇବ ସିନା ଯଶ ।

ଏ ପଞ୍ଚଭୂତ ସଙ୍ଗେ ଦେହ । ମିଶାଇ ଆନନ୍ଦରେ ରହ ॥

ତେବେ ଅମର ହେବୁ ଜାଣ । ଏ ପୃଥ୍ୱୀ ଥିବ ଯାବଦିନ ॥

ପୃଥ୍ୱୀ ସଙ୍ଗତେ ପୃଥ୍ୱୀ ହେବୁ । ଜଳ ସଙ୍ଗତେ ଜଳେ ଥିବୁ ।୫୦।
ଅଗ୍ନି ସଙ୍ଗତେ ଅଗ୍ନି ହୋଇ । ରହିବୁ ଶୁଣ ମନ ଭାଇ ।
ପବନ ସଙ୍ଗତେ ପବନ । ମିଶିଣ ରହିଥିବୁ ଜାଣ ।
ଆକାଶ ସଙ୍ଗତରେ ଭାଇ । ମିଶି ଆକାଶେ ଥିବୁ ରହି ।
ଏ ପଞ୍ଚଭୂତ ସଙ୍ଗେ ମିଶି । ଖେଳୁଥିବା ହୋ ଦିବାନିଶି ।
ଏହାଙ୍କ ସଙ୍ଗେ ଖେଳୁଥିବୁ । ମହାଶୂନ୍ୟରେ ତୁ ରହିବୁ ।
ତେବେ ତୋହର ନାହିଁ ଭୟ । ଅନ୍ତ୍ୟମର ତୋ ହେବ କାୟ ।
ମହା ଶୂନ୍ୟରେ ନିଜ ନାମ । ହେଉ କରଣ ଭାବ ମନ ।
ସଂସାରେ ଯେତେ ନାମ ଗୁଣ । ଭକତେ ଦେଇଛନ୍ତି ଜାଣ ।
ହେ ମନ ନିଜ ନାମ ବ୍ରହ୍ମ । ଅଛନ୍ତି ସବୁ ମିଛ କାମ ॥
ବ୍ରହ୍ମରୁ ପୃଥ୍ୱୀ ଅତଯାତ । ବ୍ରହ୍ମରେ ଅଛନ୍ତି ସମସ୍ତ ।
ବ୍ରହ୍ମରୁ ସର୍ବେ ଜନ୍ମିଛନ୍ତି । ସଂସାରେ ଲୀଳା ସେ କରନ୍ତି ।
ବ୍ରହ୍ମରୁ ପଞ୍ଚଭୂତ ଜନ୍ମ । ଲୀଳା ନିମନ୍ତେ ଭିନ୍ନ ଭିନ୍ନ ॥
ହେ ମନ ବ୍ରହ୍ମରୁଟି ସର୍ବେ । ଜାତ ହୁଅନ୍ତି ଅସମ୍ଭବ ।
ମଲେ ସେ ବ୍ରହ୍ମରେ ପରନ୍ତେ । ବ୍ରହ୍ମରେ ଲୀନ ସେ ହୁଅନ୍ତି ।
ପଞ୍ଚଭୂତର ଯେ ଗୋଟିଏ । ନ ଥିଲେ ଲୀଳା କେବେ ନୁହେ ।
ଆକାଶ ନ ଥିଲେ ପବନ । କାହୁଁ ଏ ଜାତ ହୋନ୍ତା ପୁଣ ॥
ପବନ ନ ଥିଲେଟି କେହି । ଅଗ୍ନି ଟି ଜାତ ହୋନ୍ତା କେହି ॥
ଅଗ୍ନି ନ ଥିଲେ ଜଳ ପୁଣି । କାହୁଁ ଏ ଜାତ ହୋନ୍ତା ଜାଣି ।
ଜଳ ନ ଥିଲେ ପୃଥ୍ୱୀ କାହୁଁ । ଜାତ ହୁଅନ୍ତା କହ ଭାଇ ॥
ଏ ପଞ୍ଚଭୂତରୁ ଗୋଟିଏ । ନ ଥିଲେ ଜନ୍ମ କାହୁଁ ହୋଏ ।
ଏ ପଞ୍ଚଭୂତରୁ ସଂସାର । ଜାତ ହୁଅନ୍ତି ଚରାଚର ।
ଏ ପଞ୍ଚଭୂତ ଭିନ୍ନ ନୋହି । ଏକା ଅଙ୍ଗଟି ଜାଣ ଭାଇ ॥
ଏ ପଞ୍ଚଭୂତ ସତ୍ୟଜାଣ । ଅଛନ୍ତି ସବୁ ମିଥ୍ୟା ମଣ ।
ଏମନ୍ତେ ପଞ୍ଚଭୂତ କଥା । ଶୁଣି ସୁମନ ହୁଅ ଚେତା ।

ଚୈତନ୍ୟ ମୁଖୁଁ ଏହା ଶୁଣି । ବୋଲଇ ମନ୍ତ୍ରବର ପୁଣି ।
ପଞ୍ଚଭୂତଙ୍କ କଥା ଯେତେ । କହଣ ଦେଲ ଯେ ଗୁପତେ ।
ମୋଠାରେ ଦୟା ଥିଲା ଯେଣୁ । ଆପଣ କହିଦେଲ ତେଣୁ ।
ମୁଁ ଯେ ସଦା ପାପୀ ଅନ୍ତର । ମୋଠାରେ ଦୟାଥିବ ବହି ।
କହଇ ଅରକ୍ଷିତ ଦାସ । ନିଜ ନାମ ବ୍ରହ୍ମକୁ ଅଂଶ ।
ଅକାଶ ଭୂତଙ୍କ ମହିମା । କହିଲେ ନ ସରଇ ସୀମା ।
ଅହେ ସୁଜନଙ୍କନେ ଶୁଣ । ପଞ୍ଚଭୂତଙ୍କ ଯେତେ ଗୁଣ ।
ଭୂତ ଗୋଟିଏ ନେ ଅଧ୍ୟାୟେ । କହିଲି ଶୁଣ ସୁଜନେ ହେ ।
ଏମନ୍ତେ ପାଞ୍ଚ ଅଧ୍ୟା ହୋଇ । ପଞ୍ଚଭୂତର କଥା ଏହି ।
ଏ ପଞ୍ଚଭୂତଙ୍କ ମହିମା । କେ କହିପାରେ ଗୁଣ ସୀମା ।
ଅକାଶ ଭୂତଙ୍କ ଚରିତ । ପଞ୍ଚାଗ୍ନି ପଦରେ ଭଣିତ ।

ଇତି ଶ୍ରୀ ମନଚୈତନ୍ୟ ସମ୍ବାଦେ ମହାମଣ୍ଡଳଗୀତାୟାଂ ଅକାଶ ଭୂତ ବର୍ଣ୍ଣନେ ନାମ ପଞ୍ଚମୋଽଧ୍ୟାୟଃ ।

---

## ଷଷ୍ଠ ଅଧ୍ୟାୟ

ମନ ଚୈତନ୍ୟ ପାଦେ ପଡ଼ି । ଶିରରେ ବେନିକର ଯୋଡ଼ି ।
ତୁମ୍ଭେ ଯେ ପ୍ରାଣ ଗୁରୁ ମୋର । କ୍ଷମାଇ ମୋରେ ମାୟାକର ।
ଏହି ଦେହରେ ମୁହିଁ ଥାଇଁ । ତୋତେ ମୁଁ ଚିହ୍ନି ନ ପାରଇ ।
ହେ ପ୍ରଭୁ ମାୟା ତୁ ନ କର । କଥାଏ କଣାଏ ଗମ୍ଭର ।
ଏ ଦେହ କାହୁଁ ଜାତ ହେଲା । ତୁମ୍ଭ ମାୟାକୁ ନ ଚିହ୍ନିଲା ।
ଛପନକୋଟି ଜୀବ ଯେତେ । ଜାତ ହୋଇଲେ କେ କେମନ୍ତେ ।
ମନ ମୁଖରୁ ଏହା ଶୁଣି । ଚୈତନ୍ୟ କହେ ହେତୁବାଣୀ ।
ମହାଶୂନ୍ୟରୁ ସର୍ବ ଜାତ । ତୋତେ ମୁଁ କହୁଦେଲି ସତ୍ୟ ।
ଛପନକୋଟି ଜୀବ ମୁହିଁ । ମୋ ମୁଖେ ବାହାର କରଇ ।

ଲୀଳା ନିମନ୍ତେ ଜାତ ହେଲି । ନାନା ରୂପଟି ମୁଁ ଧଇଲି ।
ନାନାଦି ଜୀବଙ୍କୁ ମୁହିଁ । ନାନା ନାମଟି ମୋର ହୋଇ ।
ଚଣ୍ଡାଳୁଁ ବ୍ରହ୍ମଲୋକ ଯାଏ । ନାନା ନାମଟି ମୋର ହୁଏ ।
ଚନ୍ଦ୍ରଙ୍କ ଆଦି ଦେବ ଯେତେ । ନାନା ନାମଟି ବହୁ କେତେ ।
ମେରୁ ଆଦି ଯେତେ ପର୍ବତ । ନାନା ନାମଟି ମୁହିଁ ସତ୍ୟ ।
ଅଶ୍ୱତ୍ଥ ଆଦି ଦ୍ରୁ ଯେତେ ବୃକ୍ଷ । ନାନା ନାମ ମୁହିଁ ପ୍ରତ୍ୟକ୍ଷ ।
ଛାଡରୁ ଗରଡ଼ ପର୍ଯ୍ୟନ୍ତେ । ନାନା ନାମ ମୋର ଜଗତେ ।
ସିଂହରୁ ଦଶିପୋକ ଯାଏ । ନାନା ନାମଟି ମୋର ହୁଏ ।
ଚଳନ୍ତା ଚୌଦକୋଟି ଜୀବ । ମୁହିଁଟି ହୋଇଅଛି ସର୍ବ ।
ନିଶ୍ଚଳ ଚୌଦ କୋଟି ଜାଣ । ମୁହିଁଟି ସର୍ବ ହେଲି ପୁଣ ।
ଉଡ଼ା ଚଉଦ କୋଟି ମୁହିଁ । ମୁଁ ସର୍ବରୂପ ହୋଇଛଇଁ ।
ବୁଡ଼ା ଚଉଦ କୋଟି ହେଲି । ମୁଁ ସର୍ବରୂପ ବୋଲାଇଲି ।
ଛପନ କୋଟି ଜୀବ ମୁହିଁ । ନାନା ନାମଟି ମୋର ହୋଇ ।
ମୁଁ ଦଶ ଅବତାର ହେଲି । ନାନା ନାମଟି ମୁଁ ବହିଲି ।
ମନ କହୁଛି ପ୍ରଭୁ ଶୁଣ । ତୋ ନାମ କହ ହେ ବଦନ ।
ସଂସାରେ ଯେତେ ନାମ ତାର । କହନ୍ତୁ ଦେବ ମୋ ଅଗର ।
ମନ ମୁଖରୁ ଏହା ଶୁଣି । ଚୈତନ୍ୟ କହେ ମୃଦୁବାଣୀ ।
ମୁଁ ନାନା ଅବତାର ହୋଇ । ମୁଁ ମୋତେ ନାମଟି ଦଅଇଁ ।
ମୁହିଁଟି ଭକ୍ତବୃନ୍ଦ ହେଲି । ମୁହିଁଟି ନାନା ନାମ ଦେଲି ।
କିଛି ନାମହିଁ କହୁଦେବା । ତୋ ମନୁ ସଂଶୟ ଫେଡ଼ିବା ।
ମୁଁ ବ୍ରହ୍ମା ବିଷ୍ଣୁ ମହେଶ୍ୱର । ତୋତେ କହିଲି ମୁଁ ନିକର ।
ଶଙ୍ଖାସୁରର ଅରି ମୁହିଁ । କଂସ ଅରିବ ମୁଁ ବୋଲାଇ ।
ଜଳପତିରୁ ମୁହିଁ ହେଲି । ମୁଁ ଭଗବାନ ବୋଲାଇଲି ।
ନିରଞ୍ଜନଟି ମୋର ନାମ । ନାରାୟଣଟି ହେଲି ପୁଣ ।
ଅନାହୁ ଭଞ୍ଜନ ହୋଇଲି । ଗୋପୀ ଜୀବନ ବୋଲାଇଲି ।

ବସୁଦେବ ସୁତଟି ମୁହିଁ । ହରି ନାମଟି ମୁଁ ବୋଲଇ ।
ବଳଦେବ ଜୀଟି ମୁହିଁ ଜାଣ । ଭଟଳା ବିଳାସ ପ୍ରମାଣ ।
ମୁଁ ନାଗଦର୍ପ ଭଞ୍ଜା ହେଲି । ଅର୍ଜୁନଭଞ୍ଜା ବୋଲାଇଲି ।
ପୀତବସନ ମୁହିଁ ହେଲି । ଯାଦବପତି ବୋଲାଇଲି ।
ଅନନ୍ତ ନାମ ମୋର ହୋଇ । ବୈକୁଣ୍ଠସାଇଁ ମୁଁ ବୋଲଇ ।
ଦୈତାରି ଅଚ୍ୟୁତଟି ହେଲି । ରାମ ନାମଟି ବୋଲାଇଲି ।
କେଶିସୂଦନ ନାମ ବହି । କୃପାସିନ୍ଧୁ ନାମ ବୋଲଇ ।
ରୁଣ୍ଡୁର ମର୍ଦ୍ଦନ ମୁଁ ପୁଣି । ଜଗନ୍ମୋହନ ମୁହିଁ ଜାଣି ।
ଶଙ୍ଖଚକ୍ରଧାରୀଟି ମୁହିଁ । ସୁଦର୍ଶନ ସାଇଁ ମୁଁ ବୋଲଇ ।
ମୁକୁନ୍ଦ ବିଦ୍ୟାଧର ହେଲି । ପୁରୁଷୋତ୍ତମ ବୋଲାଇଲି ।
ଗରୁଡ଼ ଆସନଟି ମୁହିଁ । ପତିତପାବନ ବୋଲାଇ ।
ପରାପର ନାଥଟି ହେଲି । ପରମାନନ୍ଦ ବୋଲାଇଲି ।
ପୁଣ୍ଡରୀକାକ୍ଷ ଭବଗ୍ରାହୀ । ଚକ୍ରାମଣିଟି ମୁଁ ବୋଲଇ ।
ନୀଳାଦ୍ରି ଦାଶରଥୀ ହେଲି । ଗୋବର୍ଦ୍ଧନଟି ବୋଲାଇଲି ।
ମାଧବ ଜନାର୍ଦ୍ଦନ ମୁହିଁ । ଜଗତନାଥ ମୁଁ ବୋଲାଇ ।
ଅତଙ୍କ ନାଶନଟି ପୁଣି । ବନମାଳିଟି ମୁହିଁ ଜାଣି ।
ବୈକୁଣ୍ଠବିହାରୀଟି ମୁହିଁ । ଶ୍ରୀ ଜଗନ୍ନାଥ ମୁଁ ବୋଲାଇ ।
ଶ୍ରୀଦାମ ନାମ ମୁହିଁ ବହି । ରଘୁପତି କେଶବ ମୁହିଁ ।
ବାଞ୍ଛା ନିଧିଟି ମୁହିଁ ହେଲି । କରୁଣାନିଧି ବୋଲାଇଲି ।
ଶ୍ରୀହରି ଶ୍ରୀପତିଟି ମୁହିଁ । ଶ୍ରୀକୃଷ୍ଣଚନ୍ଦ୍ର ମୁଁ ବୋଲାଇ ।
ଶୂନ୍ୟ ପୁରୁଷ ମୁହିଁ ଜାଣି । ଅତଙ୍କ ନାଶନ ପ୍ରମାଣ ।
କୃପା ଜଳଧି ମୁହିଁ ହେଲି । ଗୋପାଳ ମୁହିଁ ବୋଲାଇଲି ।
ଈଶ୍ୱର ଅଦ୍ୱନ୍ଦ ହେଲି । ଗୋବିନ୍ଦଚନ୍ଦ୍ର ବୋଲାଇଲି ।
ଗିରିଧାରୀଟି ମୁହିଁ ଜାଣି । ନିତ୍ୟାନନ୍ଦଟି ମୁହିଁ ପୁଣି ।
ଘନଶ୍ୟାମଟି ମୁହିଁ ହେଲି । ଗୋବିନ୍ଦଚନ୍ଦ୍ର ବୋଲାଇଲି ।

ଚତୁର୍ଭୁଜଟି ମୁହିଁ ଜାଣ । ପଞ୍ଚଲୋଚନ ମୁହିଁ ପୁଣ ।
ଅନାଥବନ୍ଧୁ ନାମ ମୋର । ଅଟଇ ମୁଁ କରୁଣାକର ।
କ୍ଷମା କରୁଣା ସିନ୍ଧୁ ମୁହିଁ । ଜଗତ ସୋଦର ଅଟଇ ।
ଗୁରୁ ଶିଷ୍ୟଟି ମୁହିଁ ହେଲି । ମୁଁ ତୋତେ ବୁଝାଇ କହିଲି ।
ମୁହିଁଟି ମୋତେ ନାମ ଦେଲି । ମୁଁ ତୋତେ ବିଦ୍ୟା ଯେ ସାଧିଲି ।
ତୁ ଯାହା ପଚାରିଲୁ ମୋତେ । ଇଚ୍ଛା ନାମ କହିଲି ତୋତେ ।
କହଇ ଅରକ୍ଷିତ ଦାସ । ଏମନ୍ତେ ମୋ ନାମ ପ୍ରକାଶ ।
ସୁଜନ ଜନମାନେ ଶୁଣ । ନିଜ ନାମ ନ କହୁ ଜାଣ ।୬୭।

ଇତି ଶ୍ରୀ ମନ-ଚୈତନ୍ୟ ସମ୍ବାଦେ ମହାମଣ୍ଡଳ ଗୀତା କଥନେ
ନାମ ଷଷ୍ଠୋଽଧ୍ୟାୟଃ ।

---

## ସପ୍ତମ ଅଧ୍ୟାୟ

ମନ ଚୈତନ୍ୟ ମୁଖ ଚୁହିଁ । ବୋଲଇ ନିସ୍ତରିଲି ମୁହିଁ ।
ଏହି ଦେହରେ ଯେତେ କଥା । ଫେଡ଼ଣି କହ ସେ ବ୍ୟବସ୍ଥା ।
ଚୈତନ୍ୟ କହେ ମନ ଶୁଣ । ତୋତେ କହିବି ଯେ ଫେଡ଼ଣ ।
ମନ ଚୈତନ୍ୟ ମୁହିଁ ହେଲି । ଜୀବ ପରମ ବୋଲାଇଲି ।
ନଖ ମୁଖ ନାସିକା ହୋଇ । ମୁଁ ହାଡ଼ ଚର୍ମ ଯେ ବୋଲାଇ ।
ରକ୍ତ ମାଂସ ଯେ ମୁହିଁ ଜାଣ । ମୁଁ ଷୋଳ ଡମ୍ବରୁ ପ୍ରମାଣ ।
ପଞ୍ଚମନଟି ହେଲି ମୁହିଁ । ପଚିଶ ପ୍ରକୃତି ଅଟଇ ।
ତ୍ରିଗୁଣ ତ୍ରିକୂଟିଟି ହେଲି । ଷଡ଼ଗୁଣଟି ବୋଲାଇଲି ।
ସାତଶବାସ୍ତରି ଯେ ନାଡ଼ୀ । ମୁଁ ସେତେ ହୋଇଅଛି ଜଡ଼ି ।
ଚୌଷଠି ଯୋଗ ମୁହିଁ ହେଲି । ନାନା ବ୍ୟାଧି ଯେ ବୋଲାଇଲି ।
ମୁଁ ସତ୍ତ୍ୱ ରଜ ତମ ଜାଣ । କ୍ରୋଧ ଲୋଭ ମୁହିଁ ପୁଣ ।
କୁଟ କପଟ ମୁହିଁ ହେଲି । ମାୟା ଦୟା ଲାଜ ବୋଲାଇଲି ।

ମୁଁ ପ୍ରେମ ଅସ୍ୱାଦନ ଜାଣ । ଭଲ ମନ୍ଦଟି ମୁହିଁ ପୁଣ ॥
କୁରୁଚି ସୁରୁଚିଟି ମୁହିଁ । କୃପଣ ଉହିଂଲାଗି ହୋଇ ।
ଅହାର ନିଦ୍ରା ମୁହିଁ ହେଲି । ମୈଥୁନ ମୁହିଁ ବୋଲାଇଲି ।
ଗୁରୁଜନ ବିଶ୍ୱାସ ମୁହିଁ । ନିର୍ମଳ ଉଦାସ ବୋଲାଇ ।
ଧାନ ଲଭଟି ମୁହିଁ ଜାଣ । ଏବେ ମୁଁ କହୁଅଛୁ ଶୁଣ ॥
ମୁଁ ସ୍ତ୍ରୀ ପୁରୁଷଟି ହେଲି । ଜନନେନ୍ଦ୍ରିୟ ବୋଲାଇଲି ।
ମାତା ପିତାଟି ହେଲି ମୁହିଁ । ଜାତ କରୁଅଛି ସର୍ବଦେହୀ ।
ଗୃହସ୍ଥ ଭର୍ତ୍ତାଯାଟି ମୁହିଁ । ପୁଅ ଝିଅଟି ମୁଁ ବୋଲାଇ ।
ପ୍ରଭୁର ମଜଲାଟି ହେଲି । ମାଈ ଭଣିତା ବୋଲାଇଲି ।
ନାତି ଅଣ୍ଟା ଯେ ହେଲି ମୁହିଁ । ଜୁଆଇଁ ପିଉସା ବୋଲାଇ ।
ଖୁଡ଼ୁତା ଭାଇବନ୍ଧୁ ମୁହିଁ । ମୁଁ ଦେଢଶୁର ଲୋ ହୋଇ ।
ଅଣ୍ଡ ମାଈଁଟି ବୋଲାଇଲି । ଶାଶୁ ଶ୍ୱଶୁର ମୁଁ ହୋଇଲି ॥
ଅଷ୍ଟ ପାଟକ ଜାତି ମୁହିଁ । ଲୀଳା ନିମନ୍ତେ ଭିନ୍ନ ହୋଇ ।
ଉଚ ଖାଲଟି ମୁହିଁ ହେଲି । ଜଟା ଝଂବାଟି ବୋଲାଇଲି ।
କୁଜା ଶ୍ରେଷ୍ଠା ଯେ ମୁହିଁ ଜାଣ । ରୋଗୀ ଭୋଗୀଟି ମୁଁ ପ୍ରମାଣ ।
ରାଜା ପରଜା ହେଲି ମୁହିଁ । ସେବକ ସାଥନ୍ତ ଅଟଇ ।
ବ୍ରାହ୍ମଣ ହାଡ଼ି ମୁହିଁ ଜାଣ । ନାନା ଜାତିଟି ମୁହିଁ ଶୁଣ ।
ତୁ ଏହା ଅନୁଭବ କର । ମୋ ମାୟା ହୋଇଯିବୁ ପାର ।
ତୁ ମୋତେ ଚିହ୍ନି ନ ପାରିଲେ । ଏ ଦେହ ଗୁଡ଼ିବଟି ଭଲେ ।
ରୂପଗୋଠାକୁ ଭାଙ୍ଗିଦେବା । ଅରୂପ ହୋଇଣ ରହିବା ।
ତୁ ତୋତେ ଚିହ୍ନି ଯେ ପାରିଲେ । ଏ ଦେହ ରହିବଟି ଭଲେ ।
ମୋହର ଏ ଖେଳ ନିମନ୍ତେ । ମାୟା ଦେଖାଇ ଥାଇ ତୋତେ
ମୁଁ ତୋତେ ଖୁଆଇ ପିଆଇ । ମୁଁ ତୋତେ ଶାନ୍ତ ଯେ କରଇ ।
ହିଂସା ରାଗଟି ହେଲି ମୁହିଁ । ମୁଁ ତୋତେ କପଟ କରଇ ॥
ଭଲ ମନ୍ଦଟି ମୁହିଁ ଜାଣ । ହସି ଟାପରା କରେ ପୁଣ ।

ମୁହିଁ ଟି ମୋତେ ବନ୍ତକର । ରଜ ବୀର୍ଯ୍ୟରୁ ରୂପ ଧର ।
ଭାଳ ଅଭାଳ ମୁହିଁ ହେଲି । ଧର୍ମ ଅଧର୍ମ ବୋଲାଇଲି ।
ମୋର ଗୁଣ ମୋତେ ତରଣ । ମୁଁ ତୋତେ ବାନ୍ଧବଣେ ପୁଣ ।
ମୁଁ ତୋତେ ପାଳଣ ମାରଇ । ମୁଁ ତୋତେ ଅଣ୍ଡସୁ କରଇ ।
ଦୁଃଖ ସୁଖ ଯେ ହେଲି ମୁହିଁ । ଶାନ୍ତ ଅଶାନ୍ତ ମୁଁ ବୋଲଇ ।
ଭୟ ନିର୍ଭୟ ମୁହିଁ ହେଲି । ଦୟା ନିର୍ଦ୍ଦୟା ବୋଲାଇଲି ।
ଜ୍ଞାନ ଅଜ୍ଞାନ ହେଲି ମୁହିଁ । ସାଧୁ ଅସାଧୁ ମୁଁ ଅଟଇ ।
ହେତୁ ଅହେତୁ ମୁହିଁ ଜାଣ । ଯୋଗୀ ଅଯୋଗୀ ହେଲି ପୁଣ ।
ବିକାର ଅବିକାର ମୁହିଁ । ପାପ ପୁଣ୍ୟଟି ମୁଁ ଅଟଇ ।
ତୀର୍ଥବାର ବ୍ରତଟି ହେଲି । ଜପ ତପ ଓଷା ହୋଇଲି ।
ଦାନୀ ଅଦାନୀ ମୁହିଁ ଜାଣ । କର୍ମ ଅକର୍ମ ଅଟେ ପୁଣ ।
ବାଦ ବିଦ୍ୟାଟି ମୁଁ ଅଟଇ । ବିଶ୍ୱ ସଙ୍ଘାତକଟି ମୁହିଁ ।
ସର୍ବ ସମଟି ମୁହିଁ ହେଲି । ଶୁଦ୍ଧ ଅଶୁଦ୍ଧ ବୋଲାଇଲି ।
ତର୍କ ବିତର୍କ ମୁହିଁ ଜାଣ । ସୁର ଅସୁର ମୁହିଁ ପୁଣ ।
ବଳବନ୍ତଟି ମୁହିଁ ହେଲି । ନିର୍ମଳ ମୁହିଁ ବୋଲାଇଲି ।
ପ୍ରଳାପୀ ସାହସୀ ମୁଁ ଜାଣ । ଏବେ କହିବି ଶୁଦ୍ଧ ଶୁଣ ।
କ୍ଷୟ ଅକ୍ଷୟ ମୁଁ ବୋଲଇ । ମୁହିଁ ଟି ଜୀଅଇ ମରଇ ।
ରୂପ ଅରୂପ ବୋଲାଇଲି । ଜୀବ ଅଜୀବ ମୁହିଁ ହେଲି ।
ଜପା ଅଜପା ମୁହିଁ ଜାଣ । ମୁଁ ହର୍ତ୍ତା କର୍ତ୍ତା ଯେ ପ୍ରମାଣ ।
ନିର୍ଦ୍ଧନୀ ଧନୀ ମୁହିଁ ହେଲି । ଭାର୍ଯ୍ୟା ଅଭାର୍ଯ୍ୟା ବୋଲାଇଲି ।
ସ୍ଥାନ ଅସ୍ଥାନ ହେଲି ମୁହିଁ । ସୁଖ ଅସୁଖ ମୁଁ ଅଟଇ ।
ପରାପରଟି ମୁହିଁ ଜାଣ । ଏହା ତୁ ହେତୁଁଧର ଘେନ ।
ଅବର ଖେଳଇ ଯେମନ୍ତେ । ମୁଁ ଏବେ କହି ଦେବି ତୋତେ ।
କହଇ ଅରକ୍ଷିତ ଦାସ । ପ୍ରଭୁଙ୍କ ମାୟାଟି ଅଶେଷ ।

ଅହେ ସ୍ୱର୍ଜନିମାନେ ବନ୍ଧୁ । ତା ମାୟା ଭେଦ ନ ଜାଣଇ ।

ଇତି ଶ୍ରୀ ମନ-ଚୈତନ୍ୟ ସମ୍ବାଦେ ମହାମଣ୍ଡଳ ଗୀତା
କଥନେ ନାମ ସପ୍ତମୋଽଧ୍ୟାୟଃ । ୭ ।

---

## ଅଷ୍ଟମ ଅଧ୍ୟାୟ

ଚୈତନ୍ୟ କହେ ମନେ ଶୁହଁ । ତୁ ମୋର ଅର୍ଦ୍ଧଅଙ୍ଗ ହୋଇ ।
ଛପନ କୋଟି ଜୀବ ହେଲି । ତୋତେ ମୁଁ ଦେଖି ବାହୁଡ଼ିଲି ।
ମୁଁ ଯେଣୁ ନାନା ରୂପ ଧରି । ତେଣୁ ମୁଁ ବ୍ରହ୍ମମାୟା କରି ।
ମାୟାକୁ ସତ୍ୟ ତୁ ମଣିଲୁ । ତୁ ମୋତେ ଚହ୍ନି ନ ପାରିଲୁ ।
ମୁଁ ଏବେ କହୁଦେବି ଶୁଣ । ଯେତେ ରୂପ ଏ ମୋ ଭିଆଣ ।
ନାନା ବୃକ୍ଷଟି ହେଲି ମୁହିଁ । ନାନା ପୁଷ୍ପଟି ମୁଁ ହୋଇଲି ।
ନାନା ଫଳଟି ମୁହିଁ ହେଲି । ନାନା ମୂଳଟି ହୋଇଲି ।
ନାନା ବସ୍ତୁଟି ମୁହିଁ ଜାଣ । ନାନା ଧନଟି ମୁହିଁ ଶୁଣ ।
ନାନା ପତ୍ର ବର୍ଣ୍ଣଟି ମୁହିଁ । ନାନା ଔଷଧ ମୁଁ ହୋଇଲି ।
ନାନା ଭଜନ ମୁହିଁ ହେଲି । ନାନା ଉପାୟ ହୋଇଲି ।
ବିଷ ଅମୃତ ହେଲି ମୁହିଁ । ନାନା ଜନ୍ତୁଟି ମୁଁ ହୋଇଲି ।
ନାନା ମତ୍ସ୍ୟଟି ହେଲି ମୁହିଁ । ଯେଣ୍ଡା କୋଟିଅ ମୋତେ କହୁ ।
ନାଗ ପୋକ ଯେ କୀଟ ମୁହିଁ । ନାନା ପକ୍ଷୀ ଜନ୍ତୁ ହୋଇଲି ।
ନାନା ମାଛ ଡାଆଁସ ହେଲି । ବ୍ୟାଘ୍ର ଭାଲୁ ରୂପ ଧରିଲି ।
ହସ୍ତୀ ଘୋଡାଟି ହେଲି ମୁହିଁ । ଗୋରୁ ମହିଷ ମୁଁ ହୋଇଲି ।
ବରାହ ମୃଗ ଯେ ମୟୂର । ଶଗଡ଼ି ମୂଷା ଯେ କୁକୁର ।
ଇତ୍ୟାଦି ଜୀବ ଜନ୍ତୁ ଯେତେ । ମୁଁ ହୋଇଅଛି ଜାଣ ନିତ୍ୟେ ।
ନାନା ରୂପଟି ହେଲି ମୁହିଁ । ସୁଗନ୍ଧ ଦୁର୍ଗନ୍ଧ ହୋଇଲି ।
ବସ୍ତ୍ରା ଭୂମିଟି ମୁହିଁ ଜାଣ । ବାସ ଅବାସ ହେଲି ପୁଣ ।

ନାନା ପଦାର୍ଥ ହେଲି ମୁହିଁ । [illegible] ।
ଅଖିଳ ପିତା ମୁହିଁ [illegible] । [illegible] ବୋଲାଇଲି ।
ଛପନକୋଟି ଜୀବ ମୁହିଁ । ମୋ ବିନୁ ଆନ ନାହିଁ ଭେଦ ।
ସକଳ ଏକତ୍ର ମଣିବୁ । ଭିନ୍ନ ଭେ ଭାହିଁ ନ ରଖିବୁ ।
ସକଳ ଏକତ୍ର ମଣିଲେ । ପୁତ ସୁଚାନ୍ତେ ଥିବୁ ଭଲେ ।
ଅଷସୃ ଅମରେ ତୁ ବନ୍ଧ । ଅଉ କଥାଏ ଶୁଣ ବନ୍ଧୁ ।
ସର୍ବ ଦେବଟି ମୁହିଁ ଜାଣ । କହୁ କହିବି ମୁଁ ଫେଡ଼ଣ ।
ତେତିଶ କୋଟି ଦେବ ମୁହିଁ । ଇନ୍ଦ୍ର ଚନ୍ଦ୍ର ସୂର୍ଯ୍ୟ ବୋଲାଇ ।
ଯମ ନଇରତ କୁବେର । ଅଇରାବତ ନାମ ମୋର ।
ବରୁଣ ବୃହସ୍ପତି ମୁହିଁ । ଦଣ୍ଡପୋଳ ବୋଲାଇ ।
ବହ୍ନୀ ଜଳ ମୁଁ ପବନ । ମୁଁ ନବଗ୍ରହ ବୋଲି ଜାଣ ।
ଏଗାର ଭରଣୀଟି ମୁହିଁ । ବାର ଚନ୍ଦ୍ରଟି ମୁଁ ବୋଲାଇ ।
ସତାଇଶ ନକ୍ଷତ୍ର ହେଲୁ । ଅଷ୍ଟବସୁବୃନ୍ଦ ବୋଲାଇଲି ।
ବୁଦ୍ଧ କିନରଟି ମୁହିଁ । ଗ୍ରହଣ ସ୍ୱସିନ୍ଧୁ ବୋଲାଇ ।
ଦ୍ୱାଦଶ ଶଣ୍ଡଦେବା ଜାଣ । ରୁଦ୍ରଗଣଟି ମୁଁ ପ୍ରମାଣ ।
ଗ୍ରହସ୍ତବର୍ଣ୍ଣ ମୁହିଁ ହେଲା । ପିତୃଗଣଟି ବୋଲାଇଲି ।
ସର୍ବଦେବଟି ମୁହିଁ ଜାଣ । କହୁ କହିବ ଦେଓ ଶୁଣି ।
ତେତିଶକୋଟି ଦେବ ମୁହିଁ । ଇନ୍ଦ୍ର ଚନ୍ଦ୍ର ମୂଳ ବୋଲାଇ ।
ମଙ୍ଗଳା ଦୁର୍ଗା ହେଲି ମୁହିଁ । କାଳୀ କପାଳୀ ମୁଁ ବୋଲାଇ ।
ଚଣ୍ଡୀ ଚାମୁଣ୍ଡା ମୁହିଁ ହେଲି । ଭୂତ ପ୍ରେତଟି ବୋଲାଇଲି ।
ଡାହାଣୀ ଡାକିନୀଟି ମୁହିଁ । ଦେବଦେବଟି ମୁଁ ବୋଲାଇ ।
ବାଦ୍ୟ ମୃଦଙ୍ଗ ମୁହିଁ ଜାଣ । ଢୋଲ ଡମରୁ ମୁଁ ପ୍ରମାଣ ।
ବୀଣା ମହୁରୀ ମୁହିଁ ହେଲି । ତୁରୀ କାହାଳୀ ବୋଲାଇଲି ।
ଦୁନ୍ଦୁଭି ବାଦ୍ୟନାଦ ଜାଣି । ନାନା ଶବଦ ହେଲି ପୁଣି ।
ଊନକୋଟି ବାଦ୍ୟଟି ମୁହିଁ । ନୃତ୍ୟ ଗୀତ ନାଦ ବୋଲାଇ ।

ଯାହାକୁ ଯେମନ୍ତ ଶବଦ । ପୂରିଅଛୁ ସର୍ବଠାବ ।
ସର୍ବଠାବଟି ମୁହିଁ ହେଲି । ଶବଦ ରୂପେ ବିହରିଲି ।
ଶିଳା ଦାରୁ ଯେ ରୂପ ହେଲି । ନାନା ପ୍ରତିମା ବୋଲାଇଲି ।
ମୁଁ ମୋତେ ପୂଜା ଯେ କରଇ । ଶୁଣ ସୁଜନେ ମନ ଦେଇ ।
ଏହା ତୁ ମନେ ହେତୁ କର । ସର୍ବ ଦେଖିବୁ ମୋ ଶରୀର ।
କହଇ ଅଚ୍ୟୁତ ଦାସ । ହେ ପ୍ରଭୁ ମାୟା କର ନାଶ ।

ଇତି ଶ୍ରୀ ମନ ଚୈତନ୍ୟ ସମ୍ବାଦେ ମହାମଣ୍ଡଳ ଗୀତା କଥନେ
ନାମ ଅଷ୍ଟମୋଽଧ୍ୟାୟ ।

---

## ନବମ ଅଧ୍ୟାୟ

ମନ ଚୈତନ୍ୟ ପାଦେ ପଡ଼ି । ସେ ସ୍ୱାମୀ କହ ସବୁ ଫେଡ଼ି ।
ପୃଥିବୀରେ ଯେତେ ରୂପ ତୁହି । କହିବୁ ସବୁ କଥା ଫେଇ ।
ମୁଁ ତୁମ୍ଭ ଚରଣେ ଶରଣ । ମୋ ତେଁ କହିବ ଭଗବାନ ।
ଏ ଦେହ କେଉଁଟିକି ବଣିବ । ତୁମ୍ଭର ମାୟାକୁ ତାରିବ ।
ଚୈତନ୍ୟ କହେ ମନ ଶୁଣ । ମୁଁ ଯେତେ ରୂପେ ଅଛି ପୁଣ ।
ସଂସାର ବୋଝ ମୁଁ ଧୋଇଲି । ତହିଁରେ ବାହାର ମୁଁ ହେଲି ।
ପୃଥିବୀ ବୋଲି ମୁହିଁ ଜାଣ । ମାଟି ରୂପରେ ମୁଁ ଭିଆଣ ।
ଗୋଟି ବୋଲିଟି ମୁହିଁ ହେଲି । ପଥର ରୂପଟି ଧଇଲି ।
ଖାଲ ଢିପଟି ମୁହିଁ ହେଲି । ମୁଁ ନଦୀ ନାଳ ବୋଲାଇଲି ।
କୁଅ ପୋଖରୀ ମୁହିଁ ହେଲି । ଲତା ବନସ୍ତ ବୋଲାଇଲି ।
ନବଦ୍ୱୀପଟି ମୁହିଁ ଜାଣ । ଗୃହଖଣ୍ଡଟି ମୁଁ ପ୍ରମାଣ ।
ଗୃହଦଣ୍ଡଟି ହେଲି ମୁହିଁ । ଗୃହବାଟଟି ମୁଁ ବୋଲଇ ।
ବାସୁକୀ ସର୍ପ ହେଲି ମୁହିଁ । ପୃଥିବୀ ଶିରେ ଅଛି ବହି ।
ଝାଡ଼ ପର୍ବତ ମୁହିଁ ଜାଣ । ବୃକ୍ଷ ତରୁ ମୁଁ ପ୍ରମାଣ ।

ଜଳ ପାଷାଣ ମୁଁ ଅଟଇ । ଅନଳ ପବନଟି ମୁହିଁ ।
ନକ୍ଷତ୍ର ରୋମାବଳୀ ମୁହିଁ । ନବଗ୍ରହଟି ମୁଁ ଅଟଇ ।
ଗୃହଦ୍ୱାରଟି ମୁହିଁ ହେଲି । ଗୃହ ସମ୍ପଦା ବୋଲାଇଲି ।
ଅନନ୍ତ କୋଟି ସାଧୁ ମୁହିଁ । ବାଳକ ବୃଦ୍ଧ ମୁଁ ଅଟଇ ।
ଚୌରାଶୀ ସିଦ୍ଧ ମୁହିଁ ହେଲି । ନବନାଥ ମୁଁ ବୋଲାଇଲି ।
ଚୌରାଶୀ ଜାତି ଗଙ୍ଗା ମୁହିଁ । ଚୌରାଶୀ ଜନ୍ତୁ ମୁଁ ବୋଲାଇ ।
ଗୃହଧାମଟି ମୁଁ ହୋଇଲି । ମୁଁ ହର୍ତ୍ତା କର୍ତ୍ତା ବୋଲାଇଲି ।
ବେଦ ପୁରାଣ ମୁହିଁ ଜାଣ । ମୁଁ ଗୀତ ଅର୍ଥ କଲି ପୁଣ ।
ଅଷ୍ଟାଦଶ ଗ୍ରନ୍ଥଟି ମୁହିଁ । ଦ୍ୱାଦଶ ସ୍କନ୍ଧଟି ବୋଲାଇ ।
ମୁଁ ସାତକାଣ୍ଡ ରାମାୟଣ । ତୋତେ କହିଲି ଏବେ ଶୁଣ ।
ମୁଁ ସପ୍ତଖଣ୍ଡ ହରିବଂଶ । ମୁଁ ଦେବ ବିଦ୍ୟା ଜପତପ ।
ନବନାଟକ ମୁହିଁ ହେଲି । ମୁଁ ବାଦ୍ୟବିଦ୍ୟା ବୋଲାଇଲି ।
ସ୍ତବ ମାନଟି ମୁହିଁ ପୁଣ । ଜପ ସମର୍ପଣ ମୁଁ ଜାଣ ।
ଭକ୍ତ ପ୍ରେମଟି ମୁହିଁ ହେଲି । ନବଧା ଭକ୍ତି ବୋଲାଇଲି ।
ଶୀତ ଗ୍ରୀଷମ ମୁହିଁ ଜାଣ । କୁହୁଡ଼ି କାକର ମୁଁ ପୁଣି ।
ଝଡ଼ି ବରଷା ମୁଁ ବୋଲାଇ । ଘଡ଼ଘଡ଼ି ଶବଦ ମୁଁ ହୋଇ ।
ଭୂଲୋକ ବ୍ରହ୍ମଲୋକ ପୁଣ । ସ୍ୱର ଲୋକଟି ମୁହିଁ ଜାଣ ।
ଜନ ଲୋକଟି ହେଲି ମୁହିଁ । ତପଲୋକଟି ମୁଁ ବୋଲାଇ ।
ସ୍ଥାବର ଜଙ୍ଗମଟି ଜାଣ । ମୁଁ କୀଟ ପତଙ୍ଗ ପ୍ରମାଣ ।
ଚଳନ୍ତା ଚୌଦକୋଟି ମୁହିଁ । ଶୁଣ ସୁମନ ଚିତ୍ତ ଦେଇ ।
ମଣ୍ଡଳ ଚୌଦକୋଟି ହେଲି । ତୋତେ ମୁଁ ଗୁପତ କହିଲି ।
ଜଡ଼ା ଚଉଦ କୋଟି ପୁଣ । ମୁଁ ହୋଇଅଛି ସର୍ବଜାଣ ।
ବୁଡ଼ା ଚଉଦ କୋଟି ମୁହିଁ । ମୁଁ ସୃଜେ କହାବ କଳଇ ।
ଛପନ କୋଟି ଜୀବ ହେଲି । ମୁଁ ନାନାରୂପେ ଲୀଳା କଲି ।
ମୁହିଁଟି ସଂସାରେ ପୂରିଛି । ମୋ ବିନୁ ଅନ୍ୟ ନାହିଁ କିଛି ।

ବ୍ରହ୍ମାଣ୍ଡେ ଯେତେତ ବାଧିମତ । ପିଣ୍ଡରେ ଅଛଇ ସମସ୍ତ ।
ପିଣ୍ଡ ବ୍ରହ୍ମାଣ୍ଡ ମୁହିଁ ହେଲି । ମୁଁ ତୋତେ ଗୁପତେ କହିଲି ।
ତୁ ଏବେ ଶୁଣ ମୋ ବଚନ । ସକଳ ଦେଖ ତୁ ସମାନ ॥
ଛପନକୋଟି ଜୀବ ତୁହି । ତୁ ଏବେ ଡରୁ କାହିଁପାଇଁ ।
ମୁଁ ଏବେ କହୁଅଛି ତୋତେ । ଡର ଭୟ ନ କର ଚିତ୍ତେ ॥
ସଂସାର ଦେଖ ଏକାକାର । ତେବେ ହୋଇବୁ ଅଜରାମର ।
ମନ ଚୈତନ୍ୟ ମୁଖ ଚାହିଁ । ମୁଁ ଏବେ ଜାଣିଲି ଗୋସାଇଁ ।
ତୁମ୍ଭ ସ୍ୱଦୟା ମୋତେ ହେଉ । ଏ ମାୟା ମୋତେ ଦୂର ଯାଉ ॥
ଏ ସପ୍ତ ବ୍ରହ୍ମାଣ୍ଡ ମଧ୍ୟରେ । ତୋ ତୁଲ୍ୟ ଅନ୍ୟ ନାହିଁ ପରେ ।
କିପାଁ ତୁ ମୋତେ ମାୟା କଲୁ । ଗୁପତେ ମୋତେ ନ କହିଲୁ ।
ଚୈତନ୍ୟ କହେ ମନ ତୁହି । ମୋହର ଖେଳ ରସ ଏହି ।
ମୋହ ମାୟାରେ ମୁଁ ପଡ଼ିଲି । ତୋତେ ମୁଁ ଗୁପତେ କହିଲି ॥
ଏବେ ମୁଁ ତୋତେ କହିଦେବି । ତୋ ମନୁ ସଂଶୟ ଫେଡ଼ିବି ।
ସର୍ବ ସମାନ ଦେଖ ଚିତ୍ତେ । ଅମରେ ରଖିବି ମୁଁ ତୋତେ ।
ଏ ଭେଦ ତୋତେ କହିଲଇଁ । ସମ ହୋଇଣ ମୁହିଁ ଥାଇ ।
ସମାନ ଦେଖିଲେ ତୁ ଥିବୁ । ନୋହିଲେ ଅବଶ୍ୟ ମରିବୁ ।
ଏହୁ ଦେହକୁ ଛାଡ଼ିଯିବୁ । ଯେବେ ତୁ ଚିହ୍ନି ନ ପାରିବୁ ।
ଏହି ଦେହକୁ ତୁହି ଯିବୁ । ମୋର ଦେହରେ ସମାଇବୁ ।
ତୋ ଦେହ ମୋ ଦେହ ଏକତ୍ୱ । ଭିନ୍ନଟି ନାହିଁ କଦାଚିତ ॥
ମୁଁ ତୋତେ ଜୀବଅସ୍ଥା କଲି । ସଂସାରଯାକ ବନ୍ଧକଲି ।
ଚୈତନ୍ୟ କହେ ମନ ଶୁଣ । ତୁ ଏବେ ଦେଖ ହୋ ସମାନ ॥
କହଇ ଅଚ୍ୟୁତ ଦାସ । ମସ୍ତିମଣ୍ଡଳ ଗୀତା ରସ ।
ଏ ଗୀତା ସାଧି ଯେ ପାରିବ । ସଂସାରେ ଅମର ହୋଇବ ।
ଏ ବିନୁ ଅନ୍ୟଗତି ନାହିଁ । ଶୁଣ ସୁମନ ଚିତ୍ତଦେଇ ।
ପାରିଲେ ଏହା ସାଧ କର । ଯେବେ ହୋଇବୁ ଅଜରାମର ।

ସ୍ୱଜନେ ନ ଘେନିମା ଦୋଷ । ମୁଁ ତୁମ୍ଭ ଦାସଙ୍କର ଦାସ ॥
ସେବିଛି ସୁଜନ ପୟର । ଏ ଦୋଷ କ୍ଷମାକର ମୋର ॥

ଇତି ଶ୍ରୀ ମନ ଚୈତନ୍ୟ ସମ୍ବାଦେ ମହାମଣ୍ଡଳ ଗୀତା କଥନେ
ନାମ ନବମୋଽଧ୍ୟାୟ ।

---

## ଦଶମ ଅଧ୍ୟାୟ

ମନ ଚୈତନ୍ୟ ମୁଖ ଗୁହିଁ । ଜୟ ଶବଦେ ଗୀତ ଗାଇ ॥
ନମୋ ନମସ୍ତେ ଯୋଗେଶ୍ୱର । ମୋର ଅପ୍ରାଧ କ୍ଷମାକର ॥
ନମୋ ନମସ୍ତେ ଦେବସ୍ୱାମୀ । ନମୋ ନମସ୍ତେ ଅନ୍ତର୍ଯାମୀ ॥
ନମୋ ନମସ୍ତେ ଭକ୍ତବନ୍ଧୁ । ନମୋ ନମସ୍ତେ କୃପାସିନ୍ଧୁ ॥
ନମୋ ନମସ୍ତେ ଦୀନବନ୍ଧୁ । ନମୋ ନମସ୍ତେ କ୍ଷମାସିନ୍ଧୁ ॥
ନମୋ ନମସ୍ତେ ହେ ଜୀବନ । ନମୋ ନମସ୍ତେ ହେ ପରମ ॥
ନମୋ ନମସ୍ତେ ନାରାୟଣ । ନମୋ ନମସ୍ତେ ଭଗବାନ ॥
ନମୋ ନମସ୍ତେ ପରବ୍ରହ୍ମ । ମହାଶୂନ୍ୟ ଯେ ତୋ ଆଶ୍ରମ ॥
ନମୋ ନମସ୍ତେ ଦଇତ୍ୟାରି । ନମୋ ନମସ୍ତେ ଦେବହରି ॥
ନମୋ ନମସ୍ତେ ହେ ରାଘବ । ନମୋ ନମସ୍ତେ ହେ ମାଧବ ॥
ନମୋ ନମସ୍ତେ ଦାଶରଥି । ନମୋ ନମସ୍ତେ ଜୀବପତି ॥
ନମୋ ନମସ୍ତେ ହର୍ତ୍ତା କର୍ତ୍ତା । ନମୋ ନମସ୍ତେ ମୋକ୍ଷଦାତା ॥
ନମୋ ନମସ୍ତେ ହେ ମୁକୁନ୍ଦ । ନମୋ ନମସ୍ତେ ରାମଚନ୍ଦ୍ର ॥
ନମୋ ନମସ୍ତେ ବିଷ୍ଣୁ ହରି । ନମୋ ନମସ୍ତେ ବେଦବର ॥
ନମୋ ନମସ୍ତେ ଗୋବର୍ଦ୍ଧନ । ନମୋ ନମସ୍ତେ ଶ୍ୟାମଘନ ॥
ନମୋ ନମସ୍ତେ ଦାମୋଦର । ନମୋ ନମସ୍ତେ ପୀତାମ୍ବର ॥
ନମୋ ନମସ୍ତେ ଶଙ୍ଖପାଣି । ନମୋ ନମସ୍ତେ ଚକ୍ରପାଣି ॥
ନମୋ ନମସ୍ତେ ନିରଞ୍ଜନ । ନମୋ ନମସ୍ତେ କଳ୍ପଦ୍ରୁମ ॥

ନମୋ ନମସ୍ତେ ଦୀକ୍ଷାଗୁରୁ । ନମୋ ନମସ୍ତେ କଳ୍ପତରୁ ।
ନମୋ ନମସ୍ତେ ବାଞ୍ଛାନିଧି । ମୋ ବାଞ୍ଛା କର ହେ ପ୍ରସିଦ୍ଧି ।
ନମୋ ନମସ୍ତେ ମହାପ୍ରଭୁ । ଏ ଦେହ କିପାଇଁ ରଖିବୁ ।
ଏ ଦେହ ଯେବେ ତୁ ରଖିବୁ । ଭକତି ଯୋଗମାର୍ଗେ ଦେବୁ ।
ଆନେ ମୋହର କାର୍ଯ୍ୟ ନାହିଁ । ମୁଁ ସତ୍ୟ କହୁଛି ଗୋସାଇଁ ।
ଭକତି ଯୋଗ ମୁଁ ସାଧିବି । ଝାଡ଼ ପର୍ବତେ ବାହୁଡ଼ିବି ।
ଝାଡ଼ ପର୍ବତେ ମୁହିଁ ଥିବି । ଭକତି ଯୋଗ ମୁଁ ସାଧିବି ।
ଏମନ୍ତ ମନେ ମୁଁ ପାଞ୍ଚିଲି । ପାଞ୍ଚି ମୁଁ ଘରକୁ ଆଇଲି ।
ସେହି ପାଞ୍ଚ ନ ରହିଲା ତୁହି । ମୋହର କିଛି ଦୋଷ ନାହିଁ ।
ତୋହର ଦୟା ଯେବେ ହୋନ୍ତା । ଏ କିପାଁ ଗୃହରେ ବୁଲନ୍ତା ।
ତୋର ନିର୍ଦ୍ଦୟା ମୋତେ ହୋଇ । ମୁଁ ଏବେ ସାଧି ନ ପାରଇ ।
ତୋର ସୁଦୟା ହେବ ଯେବେ । କିଛିତେ ସାଧିବି ମୁଁ ତେବେ ।
ମୋହର ଦୋଷ ତୁ ନ ଘେନ । ମୁଁ ତୁମ୍ଭ ଚରଣେ ଶରଣ ।
ତୋର ମାୟାରେ ମୁଁ ଭ୍ରମଇ । ଭକତି ସାଧି ନ ପାରଇ ।
ଏବେ ମୁଁ କହୁଅଛି ଶୁଣ । ମୋତେ ଉଦ୍ଧର ଭଗବାନ ।
ଖଣ୍ଡଗିରିରେ ମୁଁ ରହିଲି । ଭକତି ସାଧି ନ ପାରିଲି ।
ଖଣ୍ଡଗିରିରୁ ମୋତେ ନିଅ । ଭକତି ମୋର ସେ ସଧାଅ ।
ଝାଡ଼ ପର୍ବତରେ ବୁଲାଅ । ମୋ ମନ ଶାନ୍ତ ସେ କରାଅ ।
ଆହାର ନିଦ୍ରା ମଇଥୁନ । ଏମାନ ହୁରି ଯାଉ ପୁଣ ।
କ୍ଷୁଧା ତୃଷାହିଁ ହୁରେ ଯାଉ । ଶୁଣ ହେ ପ୍ରଭୁ ମହାବାହୁ ।
ଖର ବରଷା ଶୀତ ମୁହିଁ । କେମନ୍ତେ ସହିବି ଗୋସାଇଁ ।
ଭୟ ଘୃଣା ନିର୍ଭୟ ହେବ । ତେବେ ମୁଁ ତୁମ୍ଭଙ୍କୁ ଚହ୍ନିବି ।
ତୁମ୍ଭର ଦୟା ମୋତେ ହେଉ । ଏମାନ ବେଗେ ହୁରେ ଯାଉ ।
ଚୈତନ୍ୟ କହେ ମନ ଶୁଣ । ସକଳ ଦେଖ ତୁ ସମାନ ।
ଖର ବରଷା ଶୀତ ମୁହିଁ । ତୁ ଏବେ ଡରୁ କାହିଁ ପାଇଁ ।

ଚୌଷଠି ଯୋଗ ମୁହିଁ ଜାଣ । ତୁ ଏବେ ନ ଡର ହେ ପୁତ୍ର ।
ମୋତେ ଯେ ଚିହ୍ନି ନ ପାରଇ । ମୋ ମାୟା ତାକୁ ଯେ ଘାରଇ ।
ଭକତ ଯୋଗ ସାଧ କର । ମୋ ମାୟା ହୋଇଯିବୁ ପାର ।
ଭକତ ଯୋଗ ତୁ ସାଧିଲେ । ଯୁଗଯୁଗାନ୍ତେ ଥିବୁ ଭଲେ ।
ଅଜର ଅମର ତୁ ହେବୁ । ଯେବେ ତୁ ଏ ଯୋଗ ସାଧିବୁ ।
ନାନା ଯୋଗଟି ମୁଁ ହୋଇଛି । ନାନା ଭଜନ ମୋର ଅଛି ।
ନାନା ମନ୍ତ୍ର ଯନ୍ତ୍ରଟି ମୁହିଁ । ନାନା ତୀର୍ଥଟି ମୁଁ ବୋଲାଇ ।
ନାନା ଔଷଧି ମୁହିଁ ହେଲି । ତେତେ ମୁଁ ବୁଝାଇ କହିଲି ।
ଏ ସର୍ବ ସତ୍ୟ ତୁ ନ ମଣ । ମୋ ମାୟା ବୋଲି ସବୁ ଜାଣ ।
ଏ ସର୍ବ ମାୟାର ସଂସାର । ଭକତଭାବ ତତ୍ତ୍ୱ ସାର ।
ମୋ ନାମ ହୃଦେ ଦୃଢ଼ କର । ସର୍ବ ଦେଖିବୁ ଏକାକାର ।
କହଇ ଅରକ୍ଷିତ ଦାସ । ମହ୍ମାମଣ୍ଡଳ ଗୀତାରସ ।
ଅହେ ସୁଜନମାନେ ମୁହିଁ । ଖଣ୍ଡଗିରିରେ ଯେ ଭ୍ରମଇ ।

ଇତି ଶ୍ରୀ ମନଚୈତନ୍ୟ ସମ୍ବାଦେ ମହ୍ମାମଣ୍ଡଳଗୀତା କଥନେ
ନାମ ଦଶମୋଽଧ୍ୟାୟଃ ।

---

## ଏକାଦଶ ଅଧ୍ୟାୟ

ଅହେ ଚୈତନ୍ୟ ଶୁଣ କହୁ । ଖଣ୍ଡଗିରିରେ ଥାଇ ମୁହିଁ ।
କେତେକ ଅନ୍ୟାୟ ମୁଁ କଲି । ତୁମ୍ଭର ସେବା ମୁଁ ଛାଡ଼ିଲି ।
ଏକାନ୍ତ ହୋଇବି ବୋଲିଣ । ବିଚାର କଲି ମନେ ମନ ।
ସେ ମନ ତୁହି ହରି ନେଲୁ । ମାୟା ମୋହରେ ନାଶ କଲୁ ।
ନିର୍ଦ୍ଦୋଷୀ ଜୀବଙ୍କୁ ମାରିଲି । ଗୁମ୍ଫା ଗୁଡ଼ାଏ ଫିଟାଇଲି ।
ଲତା, ବୃକ୍ଷ ଗୁଡ଼ାଏ କାଟି । ଅପ୍ରାଧ ଅର୍ଜିଲି ମୁଁ ପୁଣି ।
ପାଷାଣ ଗୁଡ଼ାଏ କାଟାଇ । ଲୋକଙ୍କୁ ବଡ଼ କଷ୍ଟ ଦେଇ ।

ନିଷ୍ଟୟ କିଛି ନ ଜାଣିଲି । ତୋର ମାୟାରେ ମୁଁ ଭ୍ରମିଲି ।
ତୋର ମାୟାରେ ମୁଁ ଭ୍ରମଇ । ସଙ୍ଗତ କେବେ ନ ଘଟଇ ।
ଏବେ କାହିଁତେ ଦୟା କର । ଅଯୁକ୍ତ ନାହିଁ ଯେ ମୋହର ।
ତୁମ୍ଭର ଦୟା ହେଲେ ମୁହିଁ । ଖଣ୍ଡିଗିରିକି ଘଢ଼ିବଇଁ ।
ନୋହିଲେ ଘଢ଼ି ନ ପାରିବି । ଅପ୍ରାଧୀ ହୋଇଣ ମରିବି ।
ମିଛ ସତରେ ଘାଣ୍ଟି ହେଲି । ପେଟର ଜ୍ୱାଳା ନ ସହିଲି ।
ଖରା ବରଷା ଶୀତ ମୁହିଁ । ଏହା ତ ସହି ନ ପାରଇ ।
କ୍ଷୁଧା ତୃଷା ଯେ ନିଦ୍ରା ଭୟ । ଚୌଷଠି ରୋଗ ଅଛି ଦେହ ।
ଏ ସର୍ବେ ମୋତେ ଯେ ବାନ୍ଧିଲେ । ତୋର ଭକତି ଛଡ଼ାଇଲେ ।
ଏହାଙ୍କ ସଙ୍ଗେ ବଶ ହେଲି । ତୋତେ ମୁଁ ଜାଣି ନ ପାରିଲି ।
ତୁହି ତ ମୋତେ ମାୟା କଲୁ । ପାପ ପୁଣ୍ୟରେ ପକାଇଲୁ ।
ମୋହର କିଛି ଦୋଷ ନାହିଁ । ମୋତେ ନିର୍ଦ୍ଦୟ କଲୁ ତୁହି ।
ତୋହର ଦୟା ଯେବେ ହୋନ୍ତା । ଏ କପାଁ ଗ୍ରାମରେ ରହନ୍ତା ।
ତୁହି ତ ମୋତେ ବାନ୍ଧିଅଛୁ । ସର୍ବ ପ୍ରକୃତ ଯେ ହୋଇଛୁ ।
ତୋ ବିନୁ ଏ ଦେହରେ କେହୁ । ନାହାନ୍ତି ବାରେ ମୁଁ ଜାଣଇ ।
ଜଳ ପବନ ଅଗ୍ନି ହେଲି । ରକତ ମାଂସ ହାଡ଼ କଲି ।
ଏ ତିନିରୁ ସର୍ବଜାତ । ଏ ତିନି ସର୍ବଏରେ ହତ ।
ଏ ତିନି ଜାଅନ୍ତି ମରନ୍ତି । ତିନି ଭୁବନ ହୋଇଛନ୍ତି ।
ଏହି ତିନିରୁ କେ ମରଇ । ଏହା ଜାଣନ୍ତା କେହି ନାହିଁ ।
ତୁହି ସୁଦୟା ଯାବେ କରୁ । ଜନ୍ମ ମୃତ୍ୟୁରୁ ତାରୁ ତାରୁ ।
ନୋହିଲେ ଗତି ଅନ୍ୟ ନାହିଁ । ପାପ ପୁଣ୍ୟରେ ସେ ମରଇ ।
ପାପ ପୁଣ୍ୟଙ୍କୁ ଏକ କଲେ । ସେ ପିଣ୍ଡ ନାଶ ନୋହେ ଭଲେ ।
ପାପରେ ଯେହୁ ଜାତ ହେଲା । ପୁଣ୍ୟଟି ଜଗତେ ଘୋଟିଲା ।
ପାପକୁ ବେଗେ ଅଗ୍ରେ କର । ପୁଣ୍ୟକୁ ଘେନି ସଙ୍ଗତର ।
ଏ ଦୁଇ ଏକ ବୋଲି ମୁହିଁ । ନ ଜାଣେ ତୋର ମାୟାହୋଇ ।

ଏ ଦୁଇ ଏକ ମନେ କଲ । ତୋତେ ମୁଁ ଛାଡ଼ି ନାଶ ହେଲି ।
ତୋହର ଦୟା ଯେବେ ହେବ । ଏ ଦୁଇ ଏକ ଯେ କରିବ ।
କୋହଲେ ଚଳିବେ ସଙ୍ଗ ନାହିଁ । ଭଲାଭଲ କର ସରଇ ।
ଭଲାଭଲଟି କରେ ଏହୁ । ତୋତେ ପାଇବ ଅବା କାହୁଁ ।
ଯେବେ ସ୍ୱଦୟା ତୁମ୍ଭେ କର । କିଛି ନ ମାଗଇ ପ ମର ।
ରଖିଲେ ରଖ ମୁଁ ଜାଣିଲି । ତୁମ୍ଭ ବ୍ୟତୀତ କେ ଅଛଇ ।
ଦୁର୍ଲ୍ଲଭ ଶରୀର ପାଇଲି । ଏହାକୁ ଏହୁ ନ ଚିହ୍ନିଲି ।
ଏହାକୁ ଏହୁ ଯେ ଚିହ୍ନିଲେ । ଏ ଦେହ ରହନ୍ତା ଯେ ଭଲେ ।
ଏହାକୁ ଏହୁ ନ ଚିହ୍ନଇ । ଖୋଜିଲେ ପାଇବଟି କାହିଁ ।
କାଷ୍ଠ ପାଷାଣ ରୁଦ୍ରାକ୍ଷରେ । ଖୋଜିଲେ ନାହିଁଟି ତହିଁରେ ।
ମନ୍ତ୍ର ଯନ୍ତ୍ର ଧ୍ୟାନରେ ନାହିଁ । ତୀର୍ଥ ବ୍ରତରେ ସେହୁ କାହିଁ ।
ଜଳ ଅହାର ନାହିଁ ଜାଣ । କ୍ଷୀର ପବନ କାହୁଁ ପୁଣି ।
ଶୂନ୍ୟ ଭିତରେ ପଶି ରହୁ । ତୋତେ ପାଇବ କାହିଁ ସେହୁ ।
ଜଳଗ୍ନ ହୋଇ ତୁମ୍ଭ ଥାଇ । ବଚନ କାହାକୁ ନ କହୁ ।
ସେହୁଟି ଅନଙ୍ଗ ଅଟଇ । ତୋତେ ପାଇବ ଅବା କାହିଁ ।
ଏ ତୋ ବଚନ ମାୟା କଲ । ନାନା କର୍ମରେ ଭୁଲାଇଲ ।
ତେଣୁଟି ଅଜ୍ଞାନ ହୋଇଲେ । ନାନାଦି ଦେବତା ପୂଜିଲେ ।
ତେଣୁ ହୋଇଲେ ଅଳ୍ପାୟୁଷ । ତୋତେ ନ ସେବି ଗଲେ ନାଶ ।
ମୁଁ ଏବେ କଥାଏ ମାଗୁଛି । ଦିଅ ବା ନ ଦିଅ କହୁଛି ।
ଦୟାଟି ମୋତେ ଯେବେ ଥିବ । ଭକତି ଯେ ଗ ମୋତେ ଦେବ ।
ଏ ବିନୁ ଅନ୍ୟ ନ ମାଗଇ । ନ ଦେଲେ ବେଗେ ନାଶ ଯାଇ ।
ସଂସାରେ ଏହୁ କ୍ଷମା ଥିବ । ନାନା କଷ୍ଟଟି ସେ ପାଇବ ।
ଏ ଯେତେକ ପ୍ରକୃତିମାନେ । କଷ୍ଟ ଦିଅନ୍ତି ଅନୁଦିନେ ।
ଏହାଙ୍କ ଦାଉ କେ ସହିବ । ଦେହ ଛାଡ଼ିଲେ ସବୁ ଯିବ ।
କହଇ ଅରକ୍ଷିତ ଦାସ । ହେ ପ୍ରଭୁ ଖଣ୍ଡ ମାୟା ପାଶ ।

ସୁଜନ ଜନମାନେ ଶୁଣ । ମୋ ଦୋଷ ନ ଘେନିବ ପୁଣ ॥
ଏ ମହାମଣ୍ଡଳେ ଭ୍ରମିଲ । ପ୍ରଭୁଙ୍କ ସେବା ନ ପାଇଲ ॥
ଇତି ଶ୍ରୀ ମନଚୈତନ୍ୟ ସମ୍ବାଦେ ମହାମଣ୍ଡଳ ଗୀତା କଥନେ
ନାମ ଏକାଦଶୋଽଧ୍ୟାୟଃ ।

---

## ଦ୍ୱାଦଶ ଅଧ୍ୟାୟ

ହେ ଦେବଦେବ ଚଇତନ୍ୟ । ତୁମ୍ଭ ବ୍ୟତୀତ ଏଥୁ ମନ ॥
ଅନ୍ୟ କାହାକୁ ନ ସେବଇ । ହେ ଦେବଦେବ ଭବଗ୍ରାହୀ ॥
ହେ ଦେବଦେବ ଜଗତ୍କର୍ତ୍ତା । ହେ ଦେବଦେବ ଜଗତ୍ପିତା ॥
ହେ ଦେବଦେବ ବ୍ରହ୍ମାଶିବ । ହେ ଦେବଦେବ ସର୍ବ ଦେବ ॥
ହେ ଦେବଦେବ ବିଷ୍ଣୁ ତୁହି । ତୋହର ରୂପ ବର୍ଣ୍ଣ ନାହିଁ ॥
ହେ ଦେବଦେବ ଶୂନ୍ୟନାଥ । ତୋର ଶରୀରୁ ଏ ଜଗତ ॥
ହେ ଦେବଦେବ ଶୂନ୍ୟଦେହୀ । ସକଳ ଘଟେ ଅଛୁ ରହି ॥
ହେ ଦେବଦେବ ମହାନ୍ତ । ତିନିଭୁବନେ ତୋର ସ୍ଥିତ ॥
ହେ ଦେବଦେବ ମହାଘୋର । ପୂରି ରହିଛୁ ପରାପର ॥
ହେ ଦେବଦେବ ତୋ ମହିମା । କେହି ନ ଜାଣେ ତୋର ସୀମା ॥
ହେ ଦେବଦେବ ଅନ୍ତର୍ଯ୍ୟାମୀ । ସବୁରି ମନ ତୁମ୍ଭେ ଜାଣି ॥
ହେ ଦେବଦେବ ଭଗବାନ । ଜଳରୂପରେ ତୋ ଭିଆଣ ॥
ହେ ଦେବଦେବ ଦାଶରଥି । ପବନ ରୂପେ ତୋର ସ୍ଥିତି ॥
ହେ ଦେବଦେବ ନାରାୟଣ । ଅଗ୍ନି ରୂପରେ ତୋ ଭିଆଣ ॥
ହେ ଦେବଦେବ ଚନ୍ଦ୍ର ତୁହି । କାଳରୂପରେ ନାଶ ମହୀ ॥
ହେ ଦେବଦେବ ନିରଞ୍ଜନ । ସୂର୍ଯ୍ୟ ରୂପରେ ତୋ ପାଳନ ॥
ହେ ଦେବଦେବ ମୃତ୍ୟୁକାଳ । ନାଶ କରୁଛୁ ତୁ ସକଳ ॥
ହେ ଦେବଦେବ କଳ୍ପଦ୍ରୁମ । ପାପ ପୁଣ୍ୟରେ ତୋ ଅଗମ ॥
ହେ ଦେବଦେବ ହୃଷୀକେଶ । ସ୍ୱର୍ଗ ନରକେ ତୋର ବାସ ॥

ହେ ଦେବଦେବ ଘନଶ୍ୟାମ । ଧର୍ମ ଅଧର୍ମେ ତୋ ବିଶ୍ରାମ ।
ହେ ଦେବଦେବ ନିରାକାର । ସୁର ଅସୁରେ ତୋ ବିହାର ।
ହେ ଦେବଦେବ ସର୍ବ ତୁହି । ତୋ ବିନୁ ଅନ୍ୟ ନାହିଁ କେହି ।
ହେ ଦେବଦେବ ଖେଳ ତୋର । ଅନେକ ରୂପ ତୋ ଶରୀର ।
ହେ ଦେବଦେବ ଜୀବ ତୁହି । ସର୍ବ ଘଟରେ ପୂରି ରହି ।
ହେ ଦେବଦେବଙ୍କ ତୁ ପରମ । ସର୍ବ ଘଟରେ ତୋ ବିଶ୍ରାମ ।
ହେ ଦେବଦେବ ଜଗନ୍ନାଥ । ହେ ଦେବଦେବ ଜଗଦ୍ଗତ ।
ହେ ଦେବଦେବ ବ୍ରହ୍ମ ତୁହି । ତୋଠାରୁ ସର୍ବେ ପଡ଼ ପାଇ ।
ଛପନକୋଟି ଜୀବ ଯେତେ । ତୋହ ଶରୀରୁ ଏ ସମସ୍ତେ ।
ଜଡ଼ା ଗୁଡ଼ା ଯେ ତୁହି ହୋଇ । ଚଳ ନିଚଳ ତୋର ଦେହି ।
ଏ ସପ୍ତପୁର ବ୍ରହ୍ମାଣ୍ଡରେ । ପୂରିଛୁ ଜୀବ ଈଜୀବରେ ।
ତୋହର ରୂପ ବର୍ଣ୍ଣ ନାହିଁ । ଅଜ୍ୟୋତି ଅବର୍ଣ୍ଣ ଯେ ତୁହି ।
ହେ ଦେବ ପୁରାଣପୁରୁଷ । ତୋହର ମହିମା ଅଶେଷ ।
ଭକତ କଷଣ ନ ସହି । ରୂପ ଯେ ଧରୁ ଭାବଗ୍ରାହୀ ।
ନୋହିଲେ ରୂପ ନାହିଁ ତୋର । ମହାଶୂନ୍ୟରେ ତୋ ବିହାର ।
ହେ ଦେବ ସର୍ବଜ୍ଞ ପୁରୁଷ । ତୋତେ ନ ସେବି ଗଲି ନାଶ ।
ହେ ଦେବ ଶରଣ ସୋଦର । ଅନ୍ୟ ଭରସା ନାହିଁ ମୋର ।
ହେ ପ୍ରଭୁ ଦୟାଶୀଳ ତୁହି । ନିର୍ଦ୍ଦୟ ହେଲୁ ଭାବଗ୍ରାହୀ ।
ହେ ପ୍ରଭୁ ପତିତପାବନ । ତାରିଲେ ତାର ତୁ ବନ୍ଦନ ।
ନୋହିଲେ ଦେହ ଛାଡ଼ିଯାଅ । ଶୂନ୍ୟରେ ଶୂନ୍ୟ ହୋଇ ରହ ।
ହେ ଦେବଦେବ ଶୁଣ ତୁହି । ଏ ଦେବେ କିଛି କାର୍ଯ୍ୟ ନାହିଁ ।
ଏ ଦେହ ଛାଡ଼ି ମୁହିଁ ଯିବି । ତୋ ଦେହେ ଯାଇ ସମ୍ଭାଇବି ।
ଏ ଦେହେ ଅଜ୍ଞାନ ମୁଁ ହୋଇ । ତୋତେ ଯେ ଚିହ୍ନି ନ ପାରଇ ।
ଏହି ଦେହରୁ ମୁହିଁ ଗଲେ । ତୋ ଅଙ୍ଗେ ମିଶିବଇଁ ଭଲେ ।
ଏ ଦେହେ କିଛି ନ ଜାଣିଲି । ପାପ ପୁଣ୍ୟରେ ବାନ୍ଧି ହେଲି ।

ହେ ଦେବଦେବ ଅନ୍ତର୍ଯାମୀ । କଥା ଏ ମାଗୁଅଛୁ ପୁଣି ।
ହେ ଦେବଦେବ ଭକ୍ତ ଦଅ । କୋହଲେ ଦେହ ଘଡ଼ଯାଅ ।
ଏ ମହାମଣ୍ଡଳରେ ମୁହିଁ । ତୁମ୍ଭ ଯେ ଥିବ କାହିଁପାଇଁ ।
ଏ ମହାମଣ୍ଡଳେ ନ ଥିବ । ଅକ୍ଷୟ ବ୍ରହ୍ମରେ ମିଶିବ ।
ଏହ ଦୟା ତୁ ମୋତେ କର । ଜଣାଉଅଛୁ ବାରମ୍ବାର ।
ଉହର ଅଚ୍ୟୁତ ଦାସ । ମହାମଣ୍ଡଳ ଗୀତା ରସ ।
ସୁଜନ ଜନମାନେ ଶୁଣ । ଏତେ ରୂପରେ ମୋ ଭ୍ରମଣ ।
ଅକ୍ର ଏଣିକି କ କରବ । ସେ କଥା ଜାଣେ ବାସୁଦେବ ।
ଖଣ୍ଡିତିବରେ ମୁହିଁ ବହ । ମହାମଣ୍ଡଳ ଗୀତା କହ ।

ଇତି ଶ୍ରୀ ମନ-ଚୈତନ୍ୟ ସମ୍ବାଦେ ମହାମଣ୍ଡଳ ଗୀତା କଥନେ
ନାମ ଦ୍ୱାଦଶୋଽଧ୍ୟାୟଃ । ୧୨ ।

---

## ତ୍ରୟୋଦଶ ଅଧ୍ୟାୟ

ଅହେ ଚୈତନ୍ୟ ଶୁଣ ତୁହ । କସ ମାଗିବ ତୋତେ ମୁହିଁ ।
ଅହେ ଚୈତନ୍ୟ ଅନ୍ତର୍ଯାମୀ । ସବୁର ମନ ତୁମ୍ଭେ ଜାଣି ।
ଅହେ ଚୈତନ୍ୟ ଭଗବାନ । ଭକତ ଯୋଗ କର ଦାନ ।
ଅହେ ଚୈତନ୍ୟ ବାସୁଦେବ । ଭକତ ଯୋଗ ମୋତେ ଦେବ ।
ଅହେ ଚୈତନ୍ୟ ତୁ ଈଶ୍ୱର । ଭକତ ମାଗୁଛୁ ପାମର ।
ଅହେ ଚୈତନ୍ୟ ବ୍ରହ୍ମ ତୁହ । ଭକତ ଯୋଗ ଦଅ କହ ।
ଅହେ ଚୈତନ୍ୟ ବସ୍ତୁ ଶୁଣ । ଭକତ ମାଗୁଅଛୁ ପୁଣ
ଏହେ ଚୈତନ୍ୟ ଜଗତକର୍ତ୍ତା । ଭକତ ଦଅ ତୁହ ଦାତା ।
ଅହେ ଚୈତନ୍ୟ ସର୍ବଦେହୀ । ଭକତ ଯୋଗ ଦଅ କହ ।
ଅହେ ଚୈତନ୍ୟ କଳ୍ପଦ୍ରୁମ । ଭକତ ମାଗୁଅଛୁ ହୀନ ॥
ଅହେ ଚୈତନ୍ୟ ବଧନାଥ । ଭକତ ମାଗୁଅଛୁ କାତ୍ୟ ॥

ଅହେ ଚୈତନ୍ୟ ଚକ୍ରଧର । ଭକତ ମାଗୁଛି ନାକର ।
ଅହେ ଚୈତନ୍ୟ ଦୁଷ୍ଟାଭେଣ । ଭକତ ଦିଅ ପୀତବାସ ।
ଅହେ ମହିମା ମହାବାହୁ । ଭକତ ଯୋଗ ଅଙ୍ଗ ହେଉ ।
ଅହେ ବ୍ରହ୍ମାଣ୍ଡର ଠାକୁର । ଭକତ ମାଗୁଛୁ ପାମର ।
ଅହେ ହେ ଅନନ୍ତ ଶୟନ । ଭକତ ଯୋଗ ଦିଅ ପୁଣ ।
ଅହେ ଚକ୍ରବର୍ତ୍ତିର ଦାମୀ । ଭକତ ଯୋଗ ଦେବ ସ୍ୱାମୀ ।
ଅହେ ହେ ଅନନ୍ତ ମୂରତି । ଭକତି ଦିଅ ପ୍ରାଣପତି ।
ତୁମ୍ଭ ଭକତିଯୋଗ ଧର । ସକଳ ଘଟେଁ ଅଛୁ ପୂର ।
ତୋ ବିନୁ ଭେଦ ନ ଜାଣନ୍ତି । ବ୍ରହ୍ମା ଶିବହିଁ ଭ୍ରମିହୋନ୍ତି ।
ଅଜ୍ଞ ଭେ ଜାଣିବ ସଂସାରେ । ଏ ଚତୁର୍ଦ୍ଦଶ ବ୍ରହ୍ମାଣ୍ଡରେ ।
ନାନା ଉପାୟମାନ କଲେ । ତୋର ଭକତି ନ ଜାଣିଲେ ।
ଭକତି ଗୁପତେ ବହୁଛି । ତୋ ମାୟା ଘୋଟି ଯେ ମାରୁଛି ।
ତୋହର ନିଜ ଧର୍ମ ତୁମ୍ଭ । ତାହାକୁ ନ ହେଉଛି ଲମ୍ଭ ।
ସ୍ୱଭାବେ ଦୁର୍ଗମ ଭଜନ । ଦୟା ତୁ କର ମୋତେ ପୁଣ ।
ଏ ବିନୁ ଅନ୍ୟ ନ ମାଗଇ । ଭକତିଯୋଗ ଦିଅ ତହୁଁ ।
ଭକତିଯୋଗ ତୋତେ ଦେବୁ । ଯେବେ ତୁ ସଂସାରୁ ତରିବୁ ।
ନୋହିଲେ କେବେଁ ଗତି ନାହିଁ । ସଂସାରେ ଥିବୁ କାହିଁପାଇଁ ।
ରଖିଲେ ଭକ୍ତି ମୋତେ ଦିଅ । ନୋହିଲେ ଦେହ ଛାଡ଼ିଯାଅ ।
ମୋହର କିଛି ଦୋଷ ନାହିଁ । ଦିଅ ବା ନ ଦିଅଟି ତହୁଁ ।
ଏ ମହୀମଣ୍ଡଳେ ଭ୍ରମିଲି । ତୋର ମାୟାକୁ ସହ୍ୟ କଲି ।
ଏ ମାୟା ବେଗେ ଦୂରକର । ଜଣାଉଅଛି ମୁଁ ଗମ୍ଭୀର ।
ଖଣ୍ଡିଗିରିରୁ ବେଗେ ନିଅ । ଭକତ ଯୋଗ ମୋତେ ଦିଅ ।
ଏ ବିନୁ ଅନ୍ୟ ନ ମାଗଇ । ଏକାନ୍ତେ ଭଜୁଥିବି ମୁହିଁ ।
ତୁମ୍ଭର ନାମ ସଙ୍ଗେ ଘେନି । ଭକତ ସାଧୁଥିବି ପୁଣି ।
ଏତୁ ଦୟା ଯେ ତୁମ୍ଭେ କର । କ୍ଷୁଧା ତୃଷାକୁ ମୋର ମାର ।

ଜଗଦ୍ଭକ୍ତ ଅରକ୍ଷିତ ଦାସ । ମହୀମଣ୍ଡଳ ଗୀତା ରସ ।
ଆହେ ସୁଜନମାନେ ଶୁଣ । ଏ ଗୀତା କଲି ମୁଁ ବଖାଣ ।
ଏଥିରେ ଯେତେ ଦୋଷ ମୋର । କ୍ଷମା କରିବେ ଚକ୍ରଧର ।
ଭକତ ଯୋଗରେ ମୋ ଅଣ । ସୁଜନେ ନ ଦେଖିବ ଦୋଷ ।

ଇତି ଶ୍ରୀ ମନ-ଚୈତନ୍ୟ ସମ୍ବାଦେ ମହୀମଣ୍ଡଳଗୀତା କଥନେ
ନାମ ତ୍ରୟୋଦଶୋଽଧ୍ୟାୟଃ । ୧୩ ।

---

## ଚତୁର୍ଦ୍ଦଶ ଅଧ୍ୟାୟ

ଆହେ ଚୈତନ୍ୟ ଶୁଣ ତୁହି । କ୍ଷୁଧା ତୃଷା ମୋ ନ ଛାଡ଼ଇ ।
କ୍ଷୁଧା ତୃଷା ଯେ ଘୋଟି ଅଛି । ଭୟ କରାଇ ଯେ ମାରୁଛି ।
ହିଂସା ମାୟା ମୋହ ସଙ୍ଗରେ । ତୁ ଭ୍ରମାଇଲୁ ଏ ସଂସାରେ ।
ତୁହି ଯେ ସତ୍ତ୍ୱ ରଜ ତମ । ଲୋଭ କାମ ଯେ ତୁହି ଭ୍ରମ ।
ପଞ୍ଚମନ ଯେ ତୁହି ଜାଣ । ପଚିଶ ପ୍ରକୃତି ଯେ ପୁଣ ।
ଷଡ଼ରିପୁ ଯେ ତୁହି ହେଲୁ । ଚୌଷଠି ବେଗରେ ନାଶିଲୁ ।
ତୋ ବିନା ଦେହରେ କେ ରହୁ । ନାଶୁଛୁ ମୋର ଦୋଷ ନାହିଁ ।
ସର୍ବ ପ୍ରକୃତି ତୁମ୍ଭେ ହେଲ । ସଂସାର ଯାକରେ ଘୋଟିଲ ।
ତୋ ବିନା ବ୍ରହ୍ମାଣ୍ଡ ଭିତରେ । ଅଛି କେ କହିଲି ମୁଁ ତୋରେ ।
ସପ୍ତ ସମୁଦ୍ର ହୋଇଛିଲୁ । ନବଖଣ୍ଡ ମେଦିନୀ ହେଲୁ ।
ଗଡ଼ ପର୍ବତ ତୁହି ଜାଣ । ବୃକ୍ଷ ପାଷାଣ ହେଲୁ ପୁଣ ।
ଖାଲ ଡିକିର ନଦୀ ନାଳ । ଏ ତୋର ଶରୀରୁ ସକଳ ।
କୀଟ ପତଙ୍ଗ ତରୁ ତୃଣ । ତୋହର ଶରୀରୁ ଭିଆଣ ।
ଛପନ କୋଟି ଜୀବ ଯେତେ । ତୋର ଶରୀରୁ ଏ ସମସ୍ତେ ।
ପୃଥ୍ୱୀ ଯେ ଆକାଶ ମଣ୍ଡଳ । ତୋହର ଶରୀର ସକଳ ।
ଜଳ ପବନ ଅଗ୍ନି ହୋଇ । ତୋର ଶରୀରୁ ଜାତ ହୋଇ ।

ମେଘ ଜନ୍ମିଲ ତୋ ଶରୀରୁ । ବିଜୁଳି ତେଜ ତୋ ଦେହରୁ ।
ହେ ପ୍ରଭୁ ଜ୍ୟୋତିରୂପ ଧର । କେତେ ଭଙ୍ଗୀରେ ଲୀଳା ତୋର ।
ମନ୍ଦ ପବନ ଯେ ତୁହି ହେଲୁ । ଗୁହ୍ୟ ପୁଷ୍ପ ଯେ ବୋଲାଇଲୁ ।
ଚଣ୍ଡୀ ଗୃମଣ୍ଡୀ ଭୂତ ପ୍ରେତ । ତୋର ଶରୀରୁ ସର୍ବେ ଜାତ ।
ଏ ସର୍ବ ତୋର ତନୁଁ ଜାତ । ଭୂଷଣ ହୋଇଅଛୁ ତୁ ତ ।
ନାନାଦି ପକ୍ୱଫଳ ତୁହି । ନାନାଦି ଭୋଗ ତୋର ଦେହି ।
ନାନାଦି ବୃକ୍ଷ ତୁମ୍ଭେ ହେଲ । ନାନାଦି ନାମ ପ୍ରକାଶିଲ ।
କାଷ୍ଠରେ ଅଗ୍ନି ରୂପେ ରହି । ତିଳରେ ତୈଳରୂପ ତୁହି ।
ଏକା ପୁରୁଷ ସର୍ବ ହେଲୁ । କେତେ ରଙ୍ଗରେ ଲୀଳା କଲୁ ।
ତ୍ରିଶ ପୁରୁଷ ହେଲୁ ତୁହି । ଜାତ କରିଲୁ ସର୍ବ ଦେହି ।
ଏ ଚତୁର୍ଦ୍ଦଶ ବ୍ରହ୍ମାଣ୍ଡରେ । ତୋ ତନୁଁ ଅନ୍ୟ ନାହିଁ ପରେ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତୁହି । ତୋର ଶରୀରୁ ଜାତ ହୋଇ ।
ଆକାଶ ମହାଶୂନ୍ୟ ହେଲୁ । ଏ ଅନ୍ଧକାର ଯେ ଘୋଟିଲୁ ।
ତେତିଶକୋଟି ଦେବ ତୁହି । ନକ୍ଷତ୍ରଗଣ ତୁମ୍ଭେ ହୋଇ ।
ଅନନ୍ତ କୋଟି ସାଧୁ ହେଲ । ପୁରାଣମାନ ତୁମ୍ଭେ କଲ ।
ଅକ୍ଷରମାନ ହେଲୁ ତୁହି । ନକ୍ଷତ୍ରଗଣ ତୁମ୍ଭେ ହୋଇ ।
ଯାହାକୁ ଯେମନ୍ତ ଶବଦ । ଅକ୍ଷର ଲିପି ତୁ ଯେ ନାଦ ।
ଅକ୍ଷର ଶବଦ ଭିତରେ । ଯେଣୁ ରହିଛୁ ଚରାଚରେ ।
ଅଣଅକ୍ଷରେ ଜାତ ତୁହି । ନାମ ଅନାମ ତେର ଦେହି ।
ସଂସାରେ ଯେତେ ଜାତ କଲୁ । ସମସ୍ତ ନାମ ତୁହି ଦେଲୁ ।
ଏକ ନାମଟି ଭିନ୍ନ ଭିନ୍ନ । କରି ଯେ ଅଛୁ ତୁହି ପୁଣ ।
ସଂସାରେ ଖେଳିବାର ପାଇଁ । କେତେ ରୂପ ଯେ ଧରୁ ତୁହି ।
ଛପନକୋଟି ଜୀବ ହେଲୁ । ଭିନ୍ନ ଭିନ୍ନ ରୂପ ଧରିଲୁ ।
ମେରୁ ଆଦି ଯେତେ ପର୍ବତ । ତୋର ଶରୀରୁ ଏ ସମସ୍ତ ।
ତାହାକୁ ଗରୁଡ଼ ପର୍ଯ୍ୟନ୍ତେ । ତୋର ଶରୀରୁ ଏ ସମସ୍ତେ ।

ଚଣ୍ଡାଳୁ ବ୍ରହ୍ମପାଏ ଜାଣ । ତୋର ଶରୀରୁ ଏ ଭିଅଣ ॥
ବାସବ ଅଦି ଯେତେ ଦେବ । ତୋର ଶରୀରୁ ଏ ସମ୍ଭବ ।
କୀଟରୁ ବ୍ରହ୍ମପାଏ ତୁହ । ଜାତ ହୋଇଛୁ ସର୍ବ ଦେହୀ ।
ନରକ ଚୌଦ କୋଟି ହୋଇ । ତୋର ଶରୀରୁ ଜାତ ହୋଇ ।
ଛପନକୋଟି ଜୀବେ ପୁଣ । ପଡ଼ି ଯେ ଦେଉଛ ଅପଣ ।
ଅପଣେ ପଡ଼ିରୂପ ହୋଇ । ନିଜକୁ ନିଜେ ନେଉ ତୁହ ।
ଜୀବକୁ ଜୀବ ଖୁଅଉଛ । ପାପ ପୁଣ୍ୟହିଁ ସବୁ ମିଛ ।
ଜୀବକୁ ଜୀବ ହିଂସା କରୁ । ଜୀବକୁ ଜୀବ ଧରି ମାରୁ ।
ଜୀବକୁ ଜୀବ ଝଟିଥାଇ । ଏମନ୍ତେ ତୋର ମାୟା ହୋଇ ।
ହେ ପ୍ରଭୁ ସକଳ ଶବ୍ଦରେ । ପୂରି ରହିଛ ପରାପରେ ॥
ଅକାଶ ମହୀପାଏ ପୂରି । ଜୀବେ ଅଜୀବେ ସମସରି ।
ତେଣୁ ପଡ଼ିବା ଠାବ ନାହିଁ । ସପ୍ତ ବ୍ରହ୍ମାଣ୍ଡେ ପୂରି ରହି ।
ଏମନ୍ତେ କୋଟି ଯେ ରହିଛ । ଉତ୍ପତ୍ତି ପ୍ରଳୟ କରୁଛ ।
ଜାତ ହୋଇଛୁ ତୁହ ପୁଣ । ମଲେ ମରୁଛୁ ଯେ ଅପଣ ।
ତୋ ମାୟା ଭେଦ ନ ଜାଣନ୍ତି । ପାପ ପୁଣ୍ୟକୁ କଲେ ସ୍ଥିତି ।
ଏବେ କାହିଁତେ ଦୟା କରି । ସକଳ ଶରୀରୁ ବାହାରି ।
ସକଳ ସମାନ ଦେଖିବି । ଭକତି ଯୋଗ ସାଧୁଥିବି ।
ଏହି ସ୍ୱଦୟା ମୋତେ କର । ଅନ୍ୟ ଭରସା ନାହିଁ ମୋର ।
କହଇ ଅରକ୍ଷିତ ଦାସ । ଦୋଷ ନ ଧର ପୀତବାସ ॥
ସୁଜନଜନଙ୍କ ପୟରେ । ଦୋଷ ମୁଁ ମାଗେ ନିରନ୍ତରେ ।
ସୁଜନେ ଏହି ରସେ ରସ । ନ ଥିବ କାଳ ଦଣ୍ଡ ଫାଶ ।

ଇତି ଶ୍ରୀ ମନଚୈତନ୍ୟ ସମ୍ବାଦେ ମହୀମଣ୍ଡଳ ଗୀତା କଥନେ
ନାମ ଚତୁର୍ଦ୍ଦଶୋଽଧ୍ୟାୟଃ । ୧୪ ।

## ପଞ୍ଚଦଶ ଅଧ୍ୟାୟ

ଅବେ ଚୈତନ୍ୟ ଅପେ ରୂପ । ଦୁଃଖ ସୁଖରେ ଘାଣ୍ଟି ହୋଇ ।
ନାନାଦି ବେଗ ରୂପ କରି । ନାନାଦି କଷ୍ଟ ଦେଇ ମାରି ।
ନାନାଦି ଜୀବଜନ୍ତୁ ହେଉ । ନିଜକୁ ନିଜେ ଧରି ଖାଉ ।
ନିଜକୁ ନିଜେ ଯେ ଖାଉଛ । ପାପ ପୁଣ୍ୟହିଁ ସବୁ ମିଛ ।
ଧର୍ମ ଅଧର୍ମ ବିଚାର ନାହିଁ । ଶୁଭ ଅଶୁଭ ତୋର କାହିଁ ।
ସ୍ୱର୍ଗ ନରକ ନାହିଁ ପୁଣ୍ୟ । ମିଛ ସତହିଁ ନାହିଁ ଜାଣ ।
ନିଜକୁ ନିଜେ ଛେଦ ହେଲ । ନିଜକୁ ନିଜେ ନାଶ କଲ ।
ଅପକୁ ଅପେ ପିତା ମାତା । ଅପକୁ ଅପେ ତୁ କରତା ।
ଅପକୁ ଅପେ ଶତ୍ରୁ ହେଉ । ଅପକୁ ଅପେ ଖଟିଥାଉ ।
ଅପକୁ ଅପେ ବନ୍ଧୁ ବାନ୍ଧ । ଅପକୁ ଅପେ ଛନ୍ଦାଛନ୍ଦ ।
ଅପକୁ ଅପେ ଦେବଶ୍ୱର । ଅପକୁ ଅପେ କନ୍ୟା ବର ।
ଅପକୁ ଅପେ ଶଳା ମାଇଁ । ଅପକୁ ଅପେ ଶାଶୁ ହୋଇ ।
ଅପକୁ ଅପେ ଭାଇବୋହୂ । ଭେଟେ ଭଙ୍ଗିରେ ରହୁଥାଉ ।
ଅପକୁ ଅପେ ଗୁଳାକାଣ୍ଡ । ଅପକୁ ଅପେ କାଟୁ ମୁଣ୍ଡ ।
ଅପକୁ ଅପେ ସଦାସ୍ୱାର । ଅପକୁ ଅପେ ତୁ କିଙ୍କର ।
ଅପକୁ ଅପେ ଗୁରୁ ଶିଷ୍ୟ । ଖଟି ଯେ ଥାଉ ତୋର ପାଶ ।
ଅପକୁ ଅପେ କ୍ଷୁଧା ତୃଷା । ଅପକୁ ଅପେ ତୋ ଭରସା ।
ଅପକୁ ଅପେ ନିଦ୍ରା ଭୟ । ଚୌଷଠି ରୋଗ ତୋର ଦେହ ।
ସାତଶ ବାସ୍ତରି ଯେ ନାଡ଼ୀ । ଅପକୁ ଅପେ ଥାଉ ଜଡ଼ି ।
ଅପକୁ ଅପେ ଶିର ଚର୍ମ । ରକ୍ତ ମାଂସ ହାଡ଼ ଜାଣ ।
ଅପକୁ ଅପେ ରୋଗୀ ହେଲ । କଷ୍ଟ ପାଇଣ ପୁଣି ମଲ ।
ଅପେ ମରୁଛୁ ଜୀଇଁଅଛୁ । ଅପେ ଦେଖିଣ ଶୁଣୁଅଛୁ ।
ଅପେ ବାସନା ଅପେ ଖାଉ । ଅପେ ଦୁର୍ଗନ୍ଧ କଷ୍ଟ ହେଉ ।
ଅପେ ଅକାଶ ରୂପ ହୋଇ । ଅନ୍ଧକାର ଯେ ଘୋଟିଥାଇ ।

ଅପେ ଯେ ଚନ୍ଦ୍ର ପୂର୍ଣ୍ଣ ହେଲ୍ | ରାଜ ଦିବସ ତୁ ହୋଇଲ୍ |
ଅପକୁ ଅପେ ଚିହ୍ନି ରହ | ତେବେ ସଂସାରେ ସୁଖ ପାଅ |
ଅପନ୍ତୁ ଅପେ ଚିହ୍ନି ରହ | କେବେହେଁ ନ ଯାଉ ଏ ଦେହ |
ଅପକୁ ଅପେ ଦୟାକର | ଲୀଳା ଦେଖିବୁ ଯେ ତୋହର |
ସର୍ବ ଶରୀରେ ମୁଁ ଅଛଇ | ଏହା ଜାଣିଛୁ ପ୍ରଭୁ ତୁହ |
କି ରୂପେ ଲୀଳା ତୁ କରୁଛୁ | ଜଗତ କି ରୂପେ ଯୋଡିଛୁ |
ଏହା ଦେଖିବ ମୁହିଁ ହୀନ | ଭକତ ଯୋଗ ଦିଅ ପୁଣ |
ଏ ବିନୁ ଅନ୍ୟ ନ ମାଗଇ | ହେ ପ୍ରଭୁ କର ମୋତେ ଥାଇ |
ଏ ମହାମଣ୍ଡଳ ତୋ ଲୀଳା | କେମନ୍ତେ କରୁଅଛ ଖେଳା |
ଏହା ଦେଖିବାକୁ ମୋ ଅଣ | କହଇ ଅରକ୍ଷିତ ଦାସ |

ଇତି ଶ୍ରୀ ମନଚୈତନ୍ୟ ସମ୍ବାଦେ ମହାମଣ୍ଡଳଗୀତା କଥନେ ନାମ ପଞ୍ଚଦଶୋଽଧ୍ୟାୟଃ | ୧୫ |

---

## ଷୋଡ଼ଶ ଅଧ୍ୟାୟ

ମନ ମୁଖରୁ ଏହା ଶୁଣି | ଚୈତନ୍ୟ ମନେ ମନେ ଗୁଣି |
ତୁ ଯାହା କହିଲୁ ହେ। ସତ୍ୟ | ଏ ମୋର ମାୟା ବିମୋହିତ |
ମାୟାକୁ ସତ୍ୟ ତୁ ମଣିଲୁ | ତୁ ମୋତେ ଚିହ୍ନି ନ ପାରିଲୁ |
ତୁ ମୋର ଜୀବଆତ୍ମା ହୋଇ | ମୋର ସଙ୍ଗତେ ତୁହ ରହି |
କିପାଁ ତୁ ମୋତେ ପାଶୋରିଲୁ | ନାମହିଁ ମୋର ଛାଡ଼ିଦେଲୁ |
ତେଣୁ ମୁଁ ତୋତେ ମାୟାକଲି | ନାନା କର୍ମରେ ଭୁଲାଇଲି |
ଯେଣୁ ମାୟାରେ ତୁ ଭ୍ରମିଲୁ | ତେଣୁ ତୁ ଚିହ୍ନି ନ ପାରିଲୁ |
ଏବେ ମୁଁ କହୁଅଛୁ ଶୁଣ | ନାମକୁ ଚିହ୍ନ ଅନୁକ୍ଷଣ |
ମାତା ପିତା ସଙ୍ଗମକାଳେ | ରଜ ବୀର୍ଯ୍ୟ ଏକହବାଲେ |
ସେକାଳେ ତୋତେ କହୁଥିଲି | ନାମ ତୁ ଚିନ୍ତ ହୋ ବୋଇଲି |
ତୋତେ ମୁଁ ନାମ ଦୀକ୍ଷା ଦେଇ | ଶୂନ୍ୟରେ ମୁହିଁ ଗୁଞ୍ଜ ରହି |

ଗର୍ଭେ ରହିଲୁ ଦଶମାସ । ନାମରେ ଥିଲା ତୋ ବିଶ୍ୱାସ ॥
ପୃଥ୍ୱୀରେ ପଡ଼ି ପାଶୋରିଲୁ । ହସ କୌତୁକେ ଦିନ ନେଲୁ ॥
ଏବେ ତୁ ସେହି ନାମ ଚିନ୍ତ । ମୋ ନାମେ ସକଳ ଅମୃତ ॥
ଏହି ଦେହରେ ତୁ ରହିଲୁ । ତୋ ନିଜ ନାମ ପାଶୋରିଲୁ ॥
ପ୍ରକୃତିଗଣ ସଙ୍ଗେ ରହି । ଭ୍ରମିଲୁ ମାୟାମତ୍ତ ହୋଇ ॥
ଏହାଙ୍କ ପାଞ୍ଚ ତୁ ନ ଜାଣି । ଦେହକୁ ସତ୍ୟପ୍ରାୟ ମଣି ॥
ଏ ଦେହ କ୍ଷଣକେଠି ଯିବ । ନାମେ ନିର୍ଗୁଣ ମେଳ ହେବ ॥
ନାମକୁ ନିତ୍ୟ ସେବା କର । ଏ ଦେହ ରହିବ ନିଶ୍ଚଳ ॥
ନୋହିଲେ ଏ ଦେହ ନ ରହି । ନାମ ଛାଡ଼ିଲେ ପ୍ରାଣ ଯାଇ ॥
ନାମକୁ ହୃଦେ ଲୟ କର । ତେବେ ହୋଇବୁ ଅଜାମର ॥
ଯେ ନାମ ମାତା ଗର୍ଭେ ଥାଇ । ସେ ନାମ ଚିନ୍ତା କର ତୁହି ॥
ସଂସାରେ ଯେତେ ନାମ ଜାଣ । ସେ ନାମ ଚିନ୍ତିବୁ ତୁ ପୁଣ ॥
ଉଦରେ ପିତା ମୋ ଅଛନ୍ତି । କେତେ ନାମଟି ଦେଇଛନ୍ତି ॥
ସେ ନାମ ନ ଚିନ୍ତିବୁ ତୁହି । ନିଜ ନାମକୁ ସ୍ମର କହି ॥
ନିଜ ନାମ ନ ଜାଣି ମରେ । ନିନ୍ଦା କରନ୍ତି ଏ ସଂସାରେ ॥
ଯେ ନାମ ନ ଜାଣନ୍ତି କେହି । ଯେତେ ସଂସାରେ ଦେହ ବହି ।
ସଂସାର ମଧ୍ୟରେ ପ୍ରବିଷ୍ଟ । ସେ ନାମ ଗୁପତେ ରହିଛି ॥
ସେ ନାମ ମୁହିଁ ଜାଣିଥିଲି । ଚଉଦଭୁବନ ଘୋଟିଲି ॥
ସେ ନାମ ଈଶ୍ୱର ପାଇଲେ । ଅମର ହୋଇଣ ରହିଲେ ॥
ସେ ନାମ ବାରିନିଧି ପାଇ । କ୍ଷୟ ବୃଦ୍ଧିଟି ତାର ନାହିଁ ॥
ସେ ନାମ ବାସୁକି ଜାଣିଛି । ପୃଥିବୀଭାର ଶିରେ ଅଛି ॥
ସେ ନାମ ଚନ୍ଦ୍ର ସୂର୍ଯ୍ୟ ଜାଣି । ସର୍ବ ଦିବସ କଲେ ପୁଣି ॥
ସେ ନାମ ବ୍ରହ୍ମାହିଁ ଜାଣନ୍ତି । ସକଳ ସୃଷ୍ଟି ସେ କରନ୍ତି ॥
ସେ ନାମ ବିଷ୍ଣୁ ଯେ ଜାଣନ୍ତି । ସକଳ ସୃଷ୍ଟି ସେ ପାଳନ୍ତି ॥
ସେ ନାମ ଈଶ୍ୱର ଜାଣିଲେ । ସକଳ ସୃଷ୍ଟି ସଂହାରିଲେ ॥

ସେ ନାମ ଯମ ଯେ ଜାଣଇ । ସକଳ ଘଟେ ପ୍ରବର୍ତ୍ତଇ ॥
ସେ ନାମ ଅଗ୍ନି ଜାଣିଛନ୍ତି । ସକଳ ଘଟେ ପ୍ରବେଛନ୍ତି ॥
ସେ ନାମ ପବନ ଜାଣଇ । ସେ ସର୍ବ ଘଟେ ପୂରି ରହଇ ॥
ସେ ନାମ ପୃଥିବୀ ଜାଣିଛି । ସକଳ ଭାର ସେ ସହୁଛି ॥
ସେ ନାମ ନାରାୟଣ ଜାଣି । ଶଙ୍ଖ ଧରଣ ଭ୍ରମେ ପୁଣି ॥
ସେ ନାମ ମୁହିଁ ଆଣି ଭଲ । ସର୍ବଦା ଘଟକୁ ଧରିଲ ॥
ସର୍ବ ଘଟରେ ଯେଣୁ ମୁହିଁ । ତେଣୁ ବଳାଣ ମୋର ଦେହୀ ॥
କାହିଁ ଅଞ୍ଜନ ମୁହିଁ ପୁଣ । ଏବେ କହିବା ତାହା ଶୁଣ ॥
ମୁଁ ଯେବେ ଅଞ୍ଜନ ନୁହନ୍ତି । ସଂସାରେ କି ଲୀଳା କରନ୍ତି ॥
ସେ ନାମ ଶିବ ଯେ ଜାଣନ୍ତି । ଅମର ହୋଇ ରହିଛନ୍ତି ॥
ତେଣୁ ଅଞ୍ଜନ ମୁହିଁ ହେଲ । ସଂସାର ଖେଳ ଲଗାଇଲି ॥
ସେ ନାମ ବ୍ରହ୍ମାଣ୍ଡେ ଘୋଟିଛି । ସେହି ନାମକୁ ଭାବୁଅଛି ॥
ନାମ ଜଳ ସ୍ଥଳ ଅନଳ । କେହି ନ ପାନ୍ତି ତାର ତୁଲ ॥
ସେହି ନାମକୁ ମୁଁ ଭାବଇ । କ୍ଷୟ ବୃଦ୍ଧି ମୋର ନାହିଁ ॥
ଜଳରେ କେବେ ନ ବୁଡ଼ଇ । ଥାଇ ନ ଥାଇ ନ ଦିଶଇ ॥
ଶୁଖଇ ନାହିଁ ମୁହିଁ ଜାଣ । ଖଡ଼ଗେ ନ ଛେଦଇ ପୁଣ ॥
ଅନଳେ କେବେ ନ ପୋଡ଼ଇ । ପବନେ କେବେ ନ ଉଡ଼ଇ ॥
ସଂସାର ଖେଳ ପାଇ ମୁହିଁ । ଉତ୍ପତ୍ତି ପ୍ରଳୟ କରଇ ॥
ଏବେ ତୁ ସେହି ନାମ ଧର । ସଂସାରେ ହୋଇବୁ ଅମର ॥
ଆଉ କାହାକୁ ଭୟ ନାହିଁ । ସେ ନାମ ଭାବିଲିଁ ମୁହିଁ ॥
ସେ ନାମ ସର୍ବ ଭାବେ ଅଛି । ଭବଭୟ ଯେ ନାହିଁ କିଛି ॥
ସର୍ବ ସମାନ ଦେଖ ଚିତ୍ତେ । ମୁହିଁ ଟି ଅଛି ସର୍ବଭୂତେ ॥
ଏବେ ତୁ ସେହି ନାମେ ରସ । ନମଇ ଅରକ୍ଷିତ ଦାସ ॥

ଇତି ଶ୍ରୀ ମନଚୈତନ୍ୟ ସମ୍ବାଦେ ମହାମଣ୍ଡଳ ଗୀତା କଥନେ ନାମ ଷୋଡ଼ଶୋଽଧ୍ୟାୟ । ୧୬ ।

———

## ସପ୍ତଦଶ ଅଧ୍ୟାୟ

ହେ ମନ ଶୁଣ ମୋର ବାଣୀ । ଖଣ୍ଡିବିଲୁ କ୍ଷଣ ପୁଣି ।
ଏକାନ୍ତ ହୋଇଣ ବସିବୁ । ସେ ନାମ କ୍ଷଣେ ନ ଛାଡ଼ିବୁ ।
ସେ ନାମ ପ୍ରସନ୍ନ ହୋଇବ । ଯେଣେ ଗୃହିଁଲେ ତେଣେ ଥିବ ।
ସର୍ବ ଘଟରେ ନାମ ଦେଖି । ତେବେ ପାଇବୁ ମହାସୁଖ ।
ସେ ନାମ ଦୟା ଯାକୁ କରେ । କ୍ଷୁଧା ତୃଷାହିଁ ରହେ ଦୂରେ ।
ଖର ବରଷା ଶୀତ ଯେହି । ତୋତେ ନ ବାଧିବେଟି କେହି ।
ଚୌଷଟି ରୋଗ ସେହି ନାମ । ଦୟା କରିବେ ସେହି କ୍ଷଣ ।
ରୋଗ ବ୍ୟାଧିହିଁ ନ କରିବ । ଦେହ ତୋ କଞ୍ଚା ହୋଇଥିବ ।
ନିଦ୍ରା ଭୟଟି ତୋ ଶରୀର । ତୋ ଦେହୁଁ ହୋଇବେଟି ଦୂର ।
ରାତ୍ର ଦିବସ ନ ଜାଣିବୁ । ଯାହା ଯାଚ୍ଛିଲେ ତୁ ପାଇବୁ ।
ତୋତେଟି ନ ଦେଖିବେ କେହି । ତୁହି ଦେଖିବୁ ସର୍ବ ଦେହୀ ।
ପବନ ଯେମନ୍ତ ବହୁଛି । ତୋ ରୂପ ନ ଦିଶିବ କିଛି ।
ତୁହିଟି ସେହିରୂପ ହେବୁ । ଯେବେ ତୁ ଯେ ରୂପ ଚିନ୍ତିବୁ ।
ବାଳକ ରୂପକୁ ଯାଚ୍ଛିଲେ । ବାଳକ ରୂପ ହେବୁ ଭଲେ ।
ବୃଦ୍ଧ ରୂପକୁ ଇଚ୍ଛା ଯେବେ । ବୃଦ୍ଧରୂପ ହୋଇବୁ ତେବେ ।
ନବଯୁବାକୁ ଇଚ୍ଛା ଯେବେ । ସେ ରୂପ ହୋଇବୁ ତୁ ତେବେ ।
ସେ ନାମ ଜାଣିଥିଲେ ତୁହି । ଯେତେ ରୂପ ଯାଚ୍ଛିଲେ ହୋଇ ।
ସେ ନାମ ଏମନ୍ତ ମହିମା । କିସ କହିବି ତାର ସୀମା ।
ସେ ନାମେ ଭକତଟି କର । ଯେବେ ରଖିବୁ ଏ ଶରୀର ।
ଭକତ ଯେବେ ତୁ କରିବୁ । ତୋତେ କହିବ ମୁହିଁ ସବୁ ।
ଦେଖ ଅକାଶ ଶୂନ୍ୟ ଥାଇ । ସେ ଭାବେ ଦେହ ମୁଁ କହଇ ।
ଦେଖ ଏ ଦୂର୍ଯ୍ୟ ଘୋଟିଅଛି । ତୋତେ ହେଁ କାହିଁ ନ ଛାଡ଼ୁଛି ।
ତୁହିଟି ସେହିଭାବେ ରହ । ତେବେ ରହିବ ପିଣ୍ଡ ଦେହ ।
ଦେଖ ଏ ପବନ ବହୁଛି । ସକଳ ସମାନ ଦେଉଛି ।

ତୁହି ସମାନ ଦେଖିବୁ । ଜଗୃତ ପଳସ୍ତ ନୋହିବୁ ॥
ଦେଖ ଏ ଅଗ୍ନି ସର୍ବ ଖାଇ । ପାପ ପୁଣ୍ୟହିଁ ଭାବ ନାହିଁ ॥
ତୁହି ଏହି ଭାବ ଧର । ପାପ ପୁଣ୍ୟକୁ ନାହିଁ ଡର ॥
ଜଳ ଯେହ୍ନେ ସମ ଦେଖିବୁ । ସ୍ୱର୍ଗ ନରକ ନ ମାନିବୁ ॥
ଦେଖ ପୃଥିବୀ ରହିଅଛି । ସକଳ ସମାନ ଦେଖୁଛି ॥
ତୁହି ସେ ଭାବ ହୃଦେ ଧର । ସକଳ ସହି ସମ କର ॥
ମହାଟି ସର୍ବଭୂତେ ଥାଇ । ପର ଅପର ନ ଜାଣଇ ॥
ମୁହିଁ ଟି ଜଗତେ ଘୋଟିଛି । ଧର୍ମ ଅଧର୍ମ ନ ଜାଣୁଛି ॥
ତୁହି ସମାନ ଦେଖିବୁ । ଧର୍ମ ଅଧର୍ମ ନ ଗଣିବୁ ॥
ସଂସାରେ ଖେଳଘର କଲି । ଧର୍ମ ଅଧର୍ମ ବାଗୃଇଲି ॥
ନୋହିଲେ ଏ ବୁଦ୍ଧେ ସମାନ । ତୁ ଏବେ ଶୁଣ ମୋ ବଚନ ॥
ଭକତଭାବ ଶୁଣ ଏହି । ତୋତେ ମୁଁ ଫେଡ଼ି କହୁଅଛି ॥
ଏ ଭାବ ଯେହୁ ନ ଜାଣଇ । ଜନ୍ମ ମୃତ୍ୟୁରେ ଘାଣ୍ଟି ହୋଇ ॥
ଧ୍ୟାନସୂତ୍ରେ କ୍ଳେଶ ଥାଇ । ସେ ଭାବ ନ ଜାଣନ୍ତି କେହି ॥
କେ ଅବା ତୀର୍ଥ କରଯାନ୍ତି । କେ ଅବା ଦେବତା ପୂଜନ୍ତି ॥
କେ ଅବା ନାନା ଯୋଗ କରି । ମରନ୍ତି ସେ ଭାବ ପାଶୋରି ॥
ଏମନ୍ତେ ନାନାମତେ ଭ୍ରମି । ତେଣୁ ଅଜ୍ଞାନୀ ହୋନ୍ତି ପ୍ରାଣୀ ॥
ଏଣୁ ତୁ ସର୍ବ କର୍ମ ଛାଡ଼ି । ଭକତଭାବ କର ଦୃଢ଼ ॥
ଭକତଭାବେ ତୁ ପଶିଲେ । ସକଳ ଦୂର ହେବ ଭଲେ ॥
ଜାମ୍ବବ୍ତା ହୋଇଣ ରହିବୁ । ଚିତ୍ତକୁ ଦୃଢ଼ ତୁ କରିବୁ ॥
ମନ ଆନନ୍ଦ ତାହା ଶୁଣି । ବୋଲଇ ନମ୍ରବଳ ପୁଣି ॥
ଏ ଦେହେ କିଛି କାର୍ଯ୍ୟ ନାହିଁ । ତୋ ଅଙ୍ଗେ ମିଶିବାଟି ମୁହିଁ ॥
ଏହି ବୁଦ୍ଧସ୍ୱା ମୋତେ ହେଉ । ତୋର ଭକତ ହୃଦେ ଥାଉ ॥
ଏ ମହାମଣ୍ଡଳରେ ରହି । କାହିଁକି ଭ୍ରମୁଥିବ ମୁହିଁ ॥
ତୁ ଦଶଅବତାର ହେଲୁ । କେତେ କେତେ ମାରି ତାରିଲୁ ॥

ଯେତେ ଧନେଟି ବଞ୍ଚିଥିବ । ତୋ ଭାବ ଅନ୍ତର ନୋହିବ ।
ଏତେକ ମୁହିଁ ଯେ ମାଗଇ । ତୋ ନିଜ ନାମ ଧଅ କହି ।
ଅହେ ସୁଜନ ଜନେ ଶୁଣ । ମହ୍ନୀମଣ୍ଡଳ ଗୀତା ଗୁଣ ।
ଯାହା ତ ଅନୁଭବ ଥିବ । ଏ ଗୀତା ସ ଧି ସେ ଭେଦିବ ।
ଏ ଗୀତା ଭେଦି ନ ପାରିଲେ । କି ଜ୍ଞାନ ଲଭିବ ସେ ଭଲେ ।
ଏହି ଗୀତାରେ ଭକ୍ତି ଅଛି । ଭେଦିଲା ଲୋକ ଜାଣେ କିଛି ।
ଯେବେ ସେ ସାଧିବ ନିଷ୍ଠର । ଅମର ହେବ ତା ଶରୀର ।
ନୋହିଲେ ଲେଖେ ଗତି ନାହିଁ । ସଂସାରେ ଥିବ ସେ କିପାଇଁ ।
ଯେହୁ ସେ ନାମ ନ ଚିନ୍ତଇ । ଦୁଃଖରେ ଦୋରେହାଟି ସେହି ।
ଯା ଲାଗି ଦେହ ରଖିଅଛି । ତା ନାମ ନ ଭଜେ ଯେ କିଛି ।
ସଂସାରେ ସୁଖ ସେ ପାଇଲା । ନିଜ ସ୍ୱାମୀକି ଗୁଣ୍ଡ ମଲା ।
ହେ ପ୍ରଭୁ ଶରଣି ପୋଦର । ମୋ ଅପରାଧ କ୍ଷମାକର ।
ଏବେ କିଞ୍ଚିତେ ଦୟା ଦେଇ । ଏ ମହ୍ନୀମଣ୍ଡଳେ ନ ଥାଇ ।
କହଇ ଅରକ୍ଷିତ ଦାସ । ନାହି ତୁ କର ପୀତବାସ ।

ଇତି ଶ୍ରୀ ମନଚୈତନ୍ୟ ସମ୍ବାଦେ ମାହ୍ନୀମଣ୍ଡଳ ଗୀତା କଥନେ
ନାମ ସପ୍ତଦଶୋଽଧ୍ୟାୟଃ । ୧୭ ।



## ଅଷ୍ଟାଦଶ ଅଧ୍ୟାୟ

ଅହେ ଚୈତନ୍ୟ ଶୁଣ ତୁହି । ଅଜ୍ଞାନ ଅଟଇ ଯେ ମୁହିଁ ।
ଆଜ୍ଞା ନୋହିଲେ ମୁଁ ନ ଯାଇ । ଭୟୃତ କରୁଛି ଗୋସାଇଁ ।
ତୁମ୍ଭର ଆଜ୍ଞା ଯେବେ ହେବ । ଭୟ କେବେହେଁ ମୋ ନୋହିବ ।
ମନ ମୁଖରୁ ଏହା ଶୁଣି । ଚିତ୍ତ ନିର୍ମଳ ତାର ଜାଣି ।
ହେ ମନ ଭୟ କାହିଁପାଇଁ । ଆଜ୍ଞା ମୁଁ ଦେଲି ଯାଅ ତୁହି ।
ଖଣ୍ଡିଚିହ୍ନରୁ ବେଗେ ଯାଅ । ଏମନ୍ତ ହୋଇ ତୁହି ରହ ।
ଲୋଭ ମୁହାଁସ ଛାଡ଼ ତୁହି । ଏଥିରେ କିଛି କାର୍ଯ୍ୟ ନାହିଁ ।

ଏକାନ୍ତ ହୋଇଣ ରହୁବୁ । ତାହାର ସଙ୍ଗ ନ କରବୁ ।
ଏକାନ୍ତ ହୋଇ ବନେ ରହ । ଅଣ୍ଡା ମୋହର ମାନଥାଅ ।
ଅଣ୍ଡାରୁ ଦେହ ହୋଇଅଛୁ । ମାୟାରେ ନ ଜାଣଇ କିଛୁ ।
ଏବେ ମୁଁ କହୁଅଛୁ ଶୁଣ । ଅଗେ ଅଣ୍ଡା ପଛେ ଜନମ ।
ସ୍ଥାବର ଜୀବଜନ୍ତୁ ଯେତେ । ଅଣ୍ଡାରୁ ଜନ୍ମିଲେ ସମସ୍ତେ ।
ଅଣ୍ଡାରୁ ବ୍ରହ୍ମା ଯେ ପାଇଲେ । ସକଳ ସୃଷ୍ଟି ସେ ସର୍ଜିଲେ ।
ଅଣ୍ଡାକୁ ବିଷ୍ଣୁ ଯେ ପାଇଲେ । ସକଳ ସୃଷ୍ଟି କୁ ପାଳିଲେ ।
ଅଣ୍ଡା ଯେ ଶଙ୍କର ପାଇଲେ । ସକଳ ସୃଷ୍ଟି ସଂହାରିଲେ ।
ଅଣ୍ଡାକୁ ଚନ୍ଦ୍ର ସୂର୍ଯ୍ୟ ପାଇ । ରାତ୍ର ଦିବସେ ଭ୍ରମେ ସେହି ।
ଅଣ୍ଡାକୁ ପାଇ ତାରାଗଣ । ଅମ୍ବରେ କରନ୍ତି ଭ୍ରମଣ ।
ଅଣ୍ଡାକୁ ଦେବତା ପାଇଲେ । ଅମୃତ ପାନେ ସେ ରହିଲେ ।
ଅଣ୍ଡାକୁ ଶିବ ଯେ ପାଇଲେ । ଅମର ହୋଇଣ ରହିଲେ ।
ଅଣ୍ଡାକୁ ଇନ୍ଦ୍ର ପାଇକରି । ସ୍ୱର୍ଗେ ହୋଇଛୁ ଅଧିକାରୀ ।
ଅଣ୍ଡାକୁ ବୃହସ୍ପତି ପାଇ । ସକଳ ଦେବ ଗୁରୁ କହଇ ।
ଅଣ୍ଡାକୁ କୁବେର ପାଇଛୁ । ଭଣ୍ଡାର ଘର ସେ ଜଗିଛୁ ।
ଅଣ୍ଡାକୁ ଯମ ଯେ ପାଇଲା । ପାପ ପୁଣ୍ୟକୁ ସେ ବୁଝିଲା ।
ଅଣ୍ଡାକୁ ଗୁରମେଘେ ପାଇ । ପୃଥିବୀ ପାଳୁଛନ୍ତି ସେହି ।
ତେତିଶ କୋଟି ଦେବ ଯେତେ । ଅଣ୍ଡାରେ ଅଛନ୍ତି ସମସ୍ତେ ।
ଅନନ୍ତକୋଟି ଦେବଗଣ । ଅଣ୍ଡାକୁ ଧରିଣ ଭ୍ରମଣ ।
ଅଣ୍ଡାକୁ ଧ୍ରୁବ ଯେ ପାଇଲେ । ଧ୍ରୁବମଣ୍ଡଳେ ସେ ରହିଲେ ।
ଅଣ୍ଡା ଯେ ମୁନିଗଣେ ପାଇ । ଗୋପରେ ସ୍ଥିରି ରୂପ ହୋଇ ।
ଅଣ୍ଡାକୁ ବାସୁକୀ ପାଇଣ । ପୃଥିବୀ ବହୁଅଛୁ ଜାଣ ।
ପୃଥ୍ୱୀ ନିମନ୍ତେ ଦେବଗଣ । ଗୁହାରି କରନ୍ତି ଯେ ପୁଣ ।
ତାଙ୍କର ବଚନ ଶୁଣନ୍ତି । ଦଶ ଅବତାର ହୁଅନ୍ତି ।
ଅଣ୍ଡାରୁ ମୀନରୂପ ହୋଇ । ଶୁଣ ସୁଜନେ ମନ ଦେଇ ।

ଅଜ୍ଞାରେ କୂର୍ମରୂପଧର । ସଂସାରେ ଖେଳେ ନରହର ।
ଅଜ୍ଞାରେ ବରାହ ଯେ ରୂପ । ଅବନୀ ଉଦ୍ଧାରଣେ ଧାପ ।
ନରସିଂହ ଅଜ୍ଞା ରୂପରେ । ହିରଣ୍ୟ ନାଶି ଭାର ହରେ ।
ବାମନ ରୂପ ଅଜ୍ଞା ପାଇ । ବଳିଙ୍କୁ ଗୃପିଲେ ଯେ ମହୀ ।
ବଳିଙ୍କ ପାତାଳେ ରଖିଲେ । ଅଜ୍ଞାରେ ଦ୍ୱାରପାଳ ହେଲେ ।
ଅଜ୍ଞାରେ ପର୍ଶୁରାମ ରୂପ । ଦୁଷ୍ଟଙ୍କ ହରିଲେ ସେ ଦର୍ପ ।
ଅଜ୍ଞାରୁ ରାମ ରୂପେ ଜାଣ । ରାବଣ ନାଶିଲେ ଯେ ପୁଣ ।
ଅଜ୍ଞାରୁ ବଳରାମ ରୂପ । ଅବନୀ ଭାର ହରେ ଦର୍ପ ।
ଅଜ୍ଞାରେ ବୌଦ୍ଧରୂପ ହେଲେ । ନୀଳକନ୍ଦରେ ବିଜେ କଲେ ।
ଅଜ୍ଞାରେ କଲ୍କୀରୂପ ହେବେ । ଦୁଷ୍ଟଯାକ ଯେ ସଂହାରିବେ ।
ଏମନ୍ତେ ଦଶ ଅବତାର । ଅବନୀ ଭାର କରେ ସ୍ଥିର ।
ଏମନ୍ତ ଅଜ୍ଞାର ମହିମା । ମୁଁ କିସ କହିବ ତା ସୀମା ।
ମୁହିଁଟି ଅଜ୍ଞା ପାଇଅଛି । ସକଳ ଘଟେ ବିହରୁଛି ।
ତୁହିଟି ମୋ ର ସଙ୍ଗେ ଥିବୁ । ଅଜ୍ଞାକୁ ତୁ ଯେବେ ଜାଣିବୁ ।
ନୋହିଲେ କେବେ ନାହିଁ ଯଣ । ନମଇଁ ଅରକ୍ଷିତ ଦାସ ।

ଇତି ଶ୍ରୀ ମନଚୈତନ୍ୟ ସମ୍ବାଦେ ମହାମଣ୍ଡଳଗୀତା କଥନେ ନାମ ଅଷ୍ଟାଦଶୋଽଧ୍ୟାୟଃ । ୧୮ ।

---

## ଊନବିଂଶ ଅଧ୍ୟାୟ

ହେ ଅନ୍ତର୍ଯ୍ୟାମୀ ବ୍ରହ୍ମ ତୁହି । ଦୟା କର ହେ ଭବଗ୍ରାହୀ ।
ହେ ଅନ୍ତର୍ଯ୍ୟାମୀ ଚନ୍ଦ୍ର ସୂର୍ଯ୍ୟ । ଦୟା ତୁ କର ଦେବରାଜ ॥
ହେ ଅନ୍ତର୍ଯ୍ୟାମୀ ବ୍ରହ୍ମା ଶିବ । ଦୟା ତୁ କର ମୋତେ ଦେବ ।
ହେ ଜୀବ ପରମ ପୁରାଣ । ଦୟା ତୁ କର ମୋତେ ପୁଣ ।
ହେ ଶୂନ୍ୟ ଶୂନ୍ୟ ଚୂନ୍ୟ ତୁହି । ଦୟା ତୁ କର ମୋତେ କହି ।

ହେ ଜଳ ଅଗ୍ନି ହେ ପବନ । ଦୟା ତୁ କର ମୋତେ ପୁଣି ।
ହେ ଅନ୍ତର୍ଯାମୀ ହର୍ତ୍ତା କର୍ତ୍ତା । ଦୟା ତୁ କର ସର୍ବଦାତା ।
ହେ ଦେବ ଅନନ୍ତ ମୂରତି । ଦୟା ତୁ କର ପ୍ରାଣପତି ।
ଅହେ ଅକାଶ ମହୀଧର । ଦୟା ତୁ କର ପୀତାମ୍ବର ।
ଏମନ୍ତେ ନାନାରୂପ ଧରି । ଭକ୍ତଙ୍କ ରକ୍ଷଣନ୍ତି ତାର ।
ଭକତ ଅତଙ୍କେ ଡାକିଲେ । ରୂପ ଯେ ଧରନ୍ତି ହେଳେବେଳେ ।
ନୋହିଲେ ରୂପ ନାହିଁ ତୋର । ହେ ପ୍ରଭୁ ମୋତେ ଦୟାକର ।
ଅହେ ଅଗମ୍ୟ ନାଥ ତୁହି । କରତା କାରଣ ଯେ ହୋଇ ।
ତୁମ୍ଭ ବ୍ୟତୀତ ମୋତେ କେହି । ତାରଣ କରିପାରେ ନାହିଁ ।
ମୋ ମନ ଜପୁଛି କରିବୁ । ଏ ସ୍ଥାନ ବେଗେ ଛଡ଼ାଇବୁ ।
ତୁମ୍ଭର ଦୟା ଯେ ନୋହିଲେ । ଏ ସ୍ଥାନ ନ ଛାଡ଼ଇ ଭଲେ ।
ତୁହି ପ୍ରସନ୍ନ ହେଲେ ସିନା । ସେ ଭାବ ନ କର ଭାବନା ।
ତେବେ ମୁଁ ଯୁଗେ ଯୁଗେ ଥିବି । ନୋହିଲେ ଏ ଦେହ ଛାଡ଼ିବି ।
ହେ ପ୍ରଭୁ କର୍ତ୍ତା ଯେ ପୁରୁଷ । ନମଇ ଅଚ୍ୟୁତ ଦାସ ।
ଅହେ ସୁଜନମାନେ ଶୁଣ । ଏ ଗୀତ କଲି ମୁଁ ବଖାଣ ।
ମୂର୍ଖପଣରେ ଏହା କଲି । ଏ ଦୋଷ ତୁମ୍ଭଙ୍କ ମାଗିଲି ।
ଅମୃତ ପ୍ରାୟ ଗୀତାରସ । ସୁଜନେ ଏହୁଭବେ ରସ ।
ଏ ଗୀତା ଭେଦ ଯେ ରସିବ । ଜନ୍ମ ମୃତ୍ୟୁକୁ ସେ ଜିଣିବ ।
ଅଷୟ ପିଣ୍ଡ ସେହୁ ଜାଣ । ପ୍ରଳୟେ ନ ଲଭିବ ପ୍ରାଣ ।
ନୋହିଲେ କେଉଁ ଗତି ନାହିଁ । ଏ ଭାବ ଯେତେବେ ନ ଜାଣଇ ।

ଇତି ଶ୍ରୀ ମନଚୈତନ୍ୟ ସମ୍ବାଦେ ମହାମଣ୍ଡଳ ଗୀତା କଥନେ
ନାମ ଊନବିଂଶୋଽଧ୍ୟାୟଃ । ୧୯ ।

---

## ବିଂଶ ଅଧ୍ୟାୟ

ଅହେ ଚୈତନ୍ୟ ଦୟା କର । ସପ୍ତାଙ୍ଗ ଯୁଗର ସାର ।
ଏହା ଶୁଣିବାକୁ ମୋ ମନ । ପୁଚ୍ଛଇ ତୁମ୍ଭ ପାଦେ ପୁଣ ।
ମନ ମୁଖରୁ ଏହା ଶୁଣି । ସପ୍ତାଙ୍ଗ ଯୋଗେ କହେ ପୁଣି ।
ଚନ୍ଦ୍ର ସୂର୍ଯ୍ୟ ଜୀବ ପରମ । ଏ ଦୁଇ ଜଣଙ୍କର ଗୁଣ ।
ଜୀବ ପରମ ଦୁହେଁ ହୋଇ । ଦେହକୁ ଧରିଛନ୍ତି ସେହି ।
ଓଁକାର ଚନ୍ଦ୍ର ସୂର୍ଯ୍ୟ ହେଲେ । ନାସିକା ପଥେ ବାହାରିଲେ ।
ବାମ ପୁଡ଼ାରେ ଯେବେ ବହୁ । ଜୀବ ଚନ୍ଦ୍ର ଟି ସେ ବୋଲାଇ ।
ଡାହାଣ ପୁଡ଼ାରେ ବହିଲେ । ପରମ ସୂର୍ଯ୍ୟ ଅଟେ ଭଲେ ।
ଦୁଇଘଡ଼ି ଯେ ବାମେ ବହୁ । ପୁଣ ସେ ଦକ୍ଷିଣକୁ ଯାଇ ।
ଦୁଇ ଘଡ଼ି ଦକ୍ଷିଣ ପୁଡ଼ାରେ । ଓଲଟ ପାଲଟ ବାହାରେ ।
ଦକ୍ଷିଣ ପୁଡ଼ାରେ ବହୁଲେ । ସ୍ନାନ ଭୋଜନ କର ଭଲେ ।
ନାନାଦି ଦ୍ରବ୍ୟ ତୁ ଭୁଞ୍ଜିବୁ । ନିରୋଗୀ ଶରୀର ଧରିବୁ ।
ସୂର୍ଯ୍ୟଙ୍କ ତେଜ ଲାଗି ଜାଣି । ଆହାର ପଚେ ତତକ୍ଷଣି ।
ଆହାର ପାକ ଯେବେ ହୋଇ । ରୋଗଟି କେବେ ନ ପଶଇ ।
ସୂର୍ଯ୍ୟ ଉଇଁବା ଯେତେବେଳେ । ନିଦ୍ରାକୁ ଜାଗିଥିବୁ ଭଲେ ।
ଏ ଦୁଇ ଘଡ଼ିରେ ନ ଶୋଇ । ତେବେ ରହିବୁ ଚୋର ଦେହୀ ।
ରବି ଶନି ଗୁରୁ ମଙ୍ଗଳ । ଏ ଚାରି ବାର ସୂର୍ଯ୍ୟ ସ୍ଥଳ ।
ଏ ଚାରିବାରେ ସ୍ନାନ କର । ଜନ୍ମ ମୃତ୍ୟୁକୁ ତୁ ନ ଡର ।
ବାମ ପୁଡ଼ାରେ ବହୁଥିଲେ । କିଛି ନ ଖାଅ ତୁହି ଭଲେ ।
ଚନ୍ଦ୍ରମା ଶୀତଳ ଅଟଇ । ଆହାର ପାକ ଯେ ନୁହଇ ।
ଆହାର ପାକ ଯେ ନୋହିଲେ । ନାନା ରୋଗଟି ହୁଏ ଭଲେ ।
ତେଣୁ ଅଳପେ ନାଶ ଯାଇ । ତାକୁ ନ ରଖି ପାରେ କେହି ।
ବାମ ପୁଡ଼ାରେ ବହୁଥିବ । ସ୍ନାହାନ କେବେ ନ କରିବ ।
ଏ ଦୁଇ ଘଡ଼ିରେ ଶୋଇବୁ । ଯୋଗନିଦ୍ରାଟି ତୁହି ପିବୁ ।

ସୋମ ଶୁକ୍ର ଯେ ବୁଧବାରେ । ସ୍ନାହାନ ନ କର ତହିଁରେ ॥
ଏହା ଜାଣିଲେ ଅଜ୍ଞାନର । ଏ ତିନିବାର ଚନ୍ଦ୍ରଙ୍କର ।
ସୂର୍ଯ୍ୟଙ୍କ ବାର ହୋଇଥିବ । ଏହୁ ବାରେ ଯେ ଦାଗ ଯିବ ।
ଚନ୍ଦ୍ରଙ୍କ ବାର ହେଉଥିଲେ । ଗଲେଟି ନାଶ ଯାଇ ଭଲେ ॥
ସୂର୍ଯ୍ୟଙ୍କ ବେଳା ହୋଇଥିଲେ । ଚନ୍ଦ୍ର ବାସରେ କେଣେ ଗଲେ ॥
ଶୁଭ ଯେ ବେଳ ଯେ ଅଟଇ । ତେଣେ ଚଳେଟି ଯଶ ପାଇ ।
ଚନ୍ଦ୍ର ସୂର୍ଯ୍ୟଙ୍କୁ ଜଗିଥିଲେ । ଏ ଦେହ ରଖିବୁଟି ଭଲେ ॥
ଏହାଙ୍କୁ ନିତ୍ୟେ ଜଗିଥିବୁ । ଦୁଇ ଦୁଇ ଘଡ଼ି ଛାଡ଼ିବୁ ॥
ଏ ଦୁହେଁ ଦେହ ଧରିଛନ୍ତି । ଏହାଙ୍କୁ ଜାଣିଥିବୁ ନିତ ॥
ଜଦେ ଅସ୍ତକୁ ଯଗିଥିବୁ । ତଳାଛେ ବଳାଇ ନ ଦେବୁ ।
ଚନ୍ଦ୍ରମା ତେଜ ଯେ ବଳିଲେ । ଜଳ ଘୋଟିବ ତତକାଳେ ॥
ସୂର୍ଯ୍ୟଙ୍କ ତେଜ ଯେବେ ବଳେ । ଅଗ୍ନି ଉଠିବ ଅସମ୍ଭାଳେ ।
ଦୁଇ ଘଡ଼ି ଦୁଇ ବୁଅରେ । ଉଲଟ ପାଲଟ ଯେ କରେ ।
ରୋଗ ବ୍ୟାଧିହିଁ ନ ପଶନ୍ତି । ଅମର ହୋଇ ସେ ରହନ୍ତି ।
କୋହଲେ କେବେ ଯଶ ନାହିଁ । ଏହାକୁ ଯେବେ ନ ଜଗଇ ।
ସାତବାରଟି ଯେବେ ଯାଇ । ବାମ ପୁଡ଼ାରେ ତେବେ ରହି ।
ଅଠଦକେଟି ମୃତ୍ୟୁ ହେବ । ଡାହାଣେ ସେ ଯେବେ ନ ଯିବ ।
ଡାହାଣ ପୁଡ଼ା ସାତବାର । ଯେବେ ବହିବ ସେ ନଜର ।
କେବେଁ ମୃତ୍ୟୁଟି ନ ଘଟିବ । ବାମଭୁତେ ଯେବେ ନ ଯିବ ।
ସାତବାର ଯେ ଲେଉଟାଇ । ମୃତ୍ୟୁକୁ ଜିଣି ସେ ହରଇ ।
ଗଙ୍ଗା ଯମୁନା ସ୍ନାନ କର । କାଳ ମୃତ୍ୟୁକୁ ତୁ ନ ଡ଼ର ।
ଏବାବେଳେଟି ସ୍ନାନ କଲେ । କୋଟିଏ ତୀର୍ଥ ଫଳ ମିଳେ ॥
ଚନ୍ଦ୍ର ସୂର୍ଯ୍ୟଟି ଦୁଇ କହୁ । ଏହା ଓଁକାର ସଙ୍ଗେ ହୋଇ ॥
ଏହା ନ ଜାଣେ ମୂର୍ଖ ପଣେ । ମିଛେ ଭ୍ରମଇ ଏଣେ ତେଣେ ॥
ନାନା ତୀର୍ଥରେ ସ୍ନାନ କରେ । ଘର ତୀର୍ଥକୁ ସେ ପାଶୋରେ ।

ନାନା ଦିଅଙ୍କୁ ପୂଜାକର । ଘର ଦିଅଁଙ୍କୁ ଯେ ପାଶୋର ।
ନାନାଦି ଧ୍ୟାନ ମନ୍ତ୍ର ସ୍ୱରେ । ନିଜ ଦେହ ପାଶୋର ମରେ ।
ଏତା ଓଁକାର ଦେଖ ତୁହି । କେତେ ପ୍ରକାର ସେ ବହଇ ।
ଅଜ୍ଞା ପାଇଣ ସେ ବହୁଛି । ରାତି ଦିବସ ନ ଜାଣୁଛି ।
ଏଣୁ ସେ ମାରଇ ତେଣିକି । ତେଣୁ ସେ ମାରଇ ଏଣିକି ।
ଦଣ୍ଡେ ବିଶ୍ରାମ ତାର ନାହିଁ । ଅଜ୍ଞାକୁ ଶିରେ ବହୁଥାଇ ।
ଅଜ୍ଞା ହୋଇଲେ ଦେହ ଛାଡ଼େ । ମାଟି ପିଣ୍ଡ ଟି ଝୁଣ୍ଟିପଡ଼େ ।
ଏମନ୍ତେ ଅଜ୍ଞା ମାନିଛନ୍ତି । ତିଳାର୍ଦ୍ଧେ ବିମୁଖ ନୁହନ୍ତି ।
ଏବେ ସୁମନ ଶୁଣ ତୁହି । ସାତବାରଙ୍କ ଗୁଣ ଏହି ।
ରବିବାରର କଥା ଶୁଣ । କହୁଛି ହେତୁକରି ଘେନ ।
ଚନ୍ଦ୍ର ସୂର୍ଯ୍ୟ ଯେ ଏକ କରି । ତୋଳିତ ମିଶାଇଣ ଭରି ।
ନିକୁଟ ସନ୍ଧିରେ ଭରିବୁ । ଜଙ୍ଘାଣି ବାୟୁ ବୁଲାଇବୁ ।
ଏ ଦିନ ସ୍ତ୍ରୀସଙ୍ଗ ନୋହୁ । ନ କର ନ ଛୁଇଁବୁ ତୁହି ।
ତେତେବେଟି ଏ ଦେହ ରହିବ । ଯମ ଦେଖି ଭୟ କରିବ ।
ସୋମବାରରେ ସ୍ତ୍ରୀସଙ୍ଗ । ରତି କରିବୁ ନାନା ରଙ୍ଗ ।
ଦକ୍ଷିଣ ପୁଡ଼ାରେ ପବନ । ବହୁଥିବ କହୁଛି ଜାଣ ।
ତେତେବେଳେ ରତି କରିବୁ । ତଥି ଲକ୍ଷ୍ୟକୁ ଜାଗିଥିବୁ ।
ମଙ୍ଗଳବାରେ ସ୍ତ୍ରୀସଙ୍ଗ । ହୁଡ଼ି କରିବୁ ପରତ୍ୟାଗ ।
ଏ ବାରେ ପବନ ଜଙ୍ଘାଣି । ତୋଳିବୁ ନିକୁଟକୁ ପୁଣି ।
କାଳଗଣିକୁ ତୁ ଜିଣିବୁ । ତେତେବେଟି ଏ ଦେହ ରଖିବୁ ।
ବୁଧବାରରେ ରତି କରି । ତଥି ବାରକୁ ତଧିଁ ଧରି ।
ଗୁରୁବାରରେ ସ୍ତ୍ରୀ ତହିଁ । କେବେହେଁ ନ ଛୁଇଁବୁ ତୁହି ।
ନାମକୁ ଚିନ୍ତା କରୁଥିବୁ । ତେବେ ଅଜ୍ରାମରେ ରହିବୁ ।
ଯମ ଦେଖିଣ ଡରିଥିବ । ମୃତ୍ୟୁ ତୋଟତକେତେବୋହିବ ।
ଶୁକ୍ରବାରରେ ରତି ତୁହି । କର ହୋ କିଛି ଭୟ ନାହିଁ ।

ଦକ୍ଷିଣ ପୁଡ଼ାରେ ପବନ । ଚନ୍ଦ୍ରବ ଯେତେବେଳେ ପୁଣ ।
ସେତେବେଳେଟି ସ୍ତ୍ରୀ ସଙ୍ଗେ । ରତି କରିବୁ ନାନା ରଙ୍ଗେ ॥
ସେ ବୀର୍ଯ୍ୟ ଯାଇ ପଦ୍ମେ ରହି । ପୁରୁଷ ଅଙ୍ଗଜାତ ହୋଇ ।
ଶନିବାରରେ ଶୁଦ୍ଧ ପୁଣ । ସ୍ତ୍ରୀଙ୍କି ନ ଛୁଇଁବୁ ଜାଣ ।
ଏ ବାଟରେ ପବନ ତୋଳିବୁ । ଅବାୟୁ ମଣ୍ଡଳେ ଭରିବୁ ॥
ହେବେ ଅମର ହେବୁ ଜାଣ । ସାତବାରକୁ ଜାଣ ମନ ॥
ଛନିବ ରଟି ସ୍ତ୍ରୀ କନ୍ତ । ଗୁରୁବାର ପୁରୁଷ ହୋଇ ॥
ଏ ସାତବାର ଜାଣିଥିବୁ । ତିଳାର୍ଦ୍ଧେ ହେଳା ନ କରିବୁ ।
ହେଳା କଲେଟି କାଳମୃତ୍ୟୁ । ମାରି ନେବଟି ଜାଣ ହେତୁ ।
ସବୁ ଦିବସ ସାତବାର । ଜଗି ଥିବୁଟି ତୁ ନିକର ।
ଏ ସାତବାର ଜାଣିଥିଲେ । କେବେହେଁ ନ ମରିବୁ ଭଲେ ।
ହେ ମନ ଏ ସାତବାରକୁ । ଜଗ ହୋ କହିଲି ତୁମ୍ଭକୁ ।
ନ ଜଗିଲେଟି ଯଶ ନାହିଁ । ଏବେଟି ନିତ୍ୟ ଜାଣ କହି ॥
ନ ଜଗିଲେଟି ନାହିଁ ଯଶ । କହଇ ଅଚ୍ୟୁତ ଦାସ ।
ଅହେ ସୁଜନମାନେ ଶୁଣ । ସପ୍ତ ଙ୍ଗ ଯୋଗର ବିଧାନ ।

ଇତି ଶ୍ରୀ ମନଚୈତନ୍ୟ ସମ୍ବାଦେ ମହାମଣ୍ଡଳଗୀତା କଥନେ
ନାମ ବିଂଶୋଽଧ୍ୟାୟଃ । ୨ ।

---

## ଏକବିଂଶ ଅଧ୍ୟାୟ

ହେ ମନ ଶୁଣି ଏବେ ଛୁନ୍ଦ । ଏହିରୁ ଗୋଷ୍ଠୁ ପ୍ରାପ୍ତ ହୋଇ ।
ସବୁ ଜୀବ ଜନ୍ତୁଙ୍କ କ୍ରୋଧ । ସହିବୁ ସମ କରି ବୋଧ ।
ଯେ ଅବା ମାଡ଼ ଯେ ମାରିବେ । ଯେ ଅବା ଭର୍ତ୍ସନା କହିବେ ।
ଜୀବଜନ୍ତୁଙ୍କ ହିଂସାମାନ । ସବୁ ବୋଲିବୁ ନାରାୟଣ ।
ବୋଲିବୁ ପ୍ରଭୁ କୋପ ହୋଇ । ନମିବୁ ତାର ପାଦେ ଛୁଇଁ ।
ମୋର ଅନ୍ୟାୟ ସେ ଦେଖିଲେ । ଟେଣୁଟି ମୋତେ କୋପକଲେ ।

ଏମନ୍ତ ବୋଲି ମନେ ମନେ । ସର୍ବ ଭଣ୍ଡିବୁ ସମାଧାନେ ।
ବୃକ୍ଷ ପାଷାଣପରି ସହ । ତେବେ ରଖିବୁ ପିନା ଦେହ ।
ଦେଖ ନାସା ପବନ ବହୁ । ବାସ ଦୁର୍ଗନ୍ଧ ସେ ନଅଇ ।
ସେହି ପ୍ରକାରେ ତୁ ହୋଇବୁ । ଗନ୍ଧ ଦୁର୍ଗନ୍ଧ ଉପେକ୍ଷିବୁ ।
ଦେଖ କର୍ଣ୍ଣଟି ସର୍ବ ଶୁଣେ । ପାପ ପୁଣ୍ୟଟି ଯେ ନଗଣେ ।
ଏହି ପ୍ରକାରେ ତୁହି ହୁଅ । ତେବେ ତରିବୁ ମାୟାମୋହ ।
ଦେଖ ଚକ୍ଷୁ ସର୍ବ ଦେଖଇ । ସର୍ବେ ଅସର୍ବେ ଦୃଷ୍ଟି ଦେଇ ।
ସେହି ପ୍ରକାରେ ତୁହି ହୁଅ । ତେବେ ସଂସାରେ ସୁଖେ ଥାଅ ।
ଦେଖ ଜିହ୍ୱାଟି ସର୍ବ ଖାଇ । ସ୍ୱାଦୁ ଅସ୍ୱାଦୁ ସେ ବାଛଇ ।
ଏହାକୁ ଜାଣି ସମକରି । ତେବେ ତରିବୁ ଭବବାରି ।
ମିଛ ସତଟି ତୁହି ଜାଣ । ଏ ଦୁହେଁ ଅଟନ୍ତି ସମାନ ।
ଛୁଅଁ ଅଛୁଅଁ ନ ବାଛିବୁ । ଏହାକୁ ସମାନ ଜାଣିବୁ ।
ଶଙ୍କୁଣ ନିଶଙ୍କୁଣ ଦୁଇ । ସମାନଟି ଦେଖିବୁ ତୁହି ।
ମନ ତୁ କିଛି ନ ବାଛିବୁ । ସର୍ବ ସମାନ ତୁ ଦେଖିବୁ ।
ଏକା ଓଁକାର ସର୍ବ ଘରେ । ଯା ଦେହ ସର୍ବ ଘଟ ହରେ ।
ସ୍ୱାଦୁ ଅସ୍ୱାଦୁ ସେ ବସ୍ତୁର । ନୟନେ ଦେଖି ଶୁଣିକରି ।
ସ୍ୱାଦୁ ଅସ୍ୱାଦୁ ନ ବାଛିବୁ । ଏ ଦୁଇ ସମାନ ଦେଖିବୁ ।
ଦେଖ ଓଁକାର ସର୍ବ ଅଛି । ଏ ଦୁଇ ସମାନ ଦେଖୁଛି ।
ତୁହିଟି ଏହିଭାବେ ରହ । ଓଁକାର ଭାବ ଘେନିଥାଅ ।
ଧର୍ମ ଅଧର୍ମ ଦେଖ ସମ । ଏ ଦୁହେଁ ଅଟନ୍ତି ସମାନ ।
ଶୁଭ ଅଶୁଭ ନ ମଣିବୁ । ଏ ଦୁଇ ସମାନ ଦେଖିବୁ ।
ଭଲ ମନ୍ଦଟି ନାହିଁ ଜାଣ । ଏ ଦୁହେଁ ଅଟନ୍ତି ସମାନ ।
ଦୁଃଖ ସୁଖହିଁ ନ ଗଣିବୁ । ଏ ଦୁଇ ସମାନ ଦେଖିବୁ ।
ଚିନ୍ତା ଅଚିନ୍ତା ତୁ ନ କର । ଏ ଦୁହେଁ ସମାନ ନିକର ।
ଭୟ ଅଭୟ ନ କରିବୁ । ଏ ଦୁଇ ସମାନ ଦେଖିବୁ ।

ସାଧୁ ଅସାଧୁ ତୁ ନ ମଣ । ଏ ଦୁହେଁ ଅଟନ୍ତି ସମାନ ।
ଧର୍ମ ଅଧର୍ମ ନ ଭାବବୁ । ଏ ଦୁଇ ସମାନ ଦେଖିବୁ ।
ପାପ ପୁଣ୍ୟ ତୁ ନ ବିଗୁର । ଏ ଦୁହେଁ ସମାନ ଜାଣର ।
ସ୍ୱର୍ଗ ନରକ ନ ଭାବବୁ । ଏ ଦୁଇ ସମାନ ଦେଖିବୁ ॥
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତିନି । ଏ ତିନି ଏକ ବୋଲି ଜାଣି ।
ବ୍ରହ୍ମା ବିଷ୍ଣୁ ଶିବଟି ଜାଣ । ଏ ତିନି ଏକ ବୋଲି ଗଣ ।
ଜଳ ପବନ ଅଗ୍ନି ଯେହୁ । ଏ ତିନି ଏକଅଙ୍ଗ ହୋଇ ।
ଏହା ଓଁକାର ସର୍ବ ଜାଣ । ଭିନ୍ନ ଭିନ୍ନଟି କରେ ପୁଣ ।
ଲୀଳା ନିମନ୍ତେ ଭିନ୍ନ ହୋଇ । ଏହା ମନୁଷ୍ୟ କେହୁ ନ ଜାଣଇ ।
ନବଦ୍ୱାରେ ସେ ବିହରିଲ । ଖେଳକୁ ଖେଳା ଯେ ଗ୍ରହିଲ ।
ପ୍ରେମ ପ୍ରେମକେ ବିହରଇ । ଅନନ୍ତ ରୂପ ତାକୁ କହି ।
ଅଜ୍ଞାକୁ ଶିରେ ଘେନିଅଛୁ । ଦୁଃଖ ସୁଖହିଁ ପାଇଅଛୁ ।
ଜନ୍ମିଛୁ ମରୁଛୁଟି ସେହୁ । ଏ ଦୁଇ ସମାନ ଅଟଇ ।
ପର ଘରରେ ତୁ ରହୁଛୁ । ଆପଣା ଘର ନ ଜାଣୁଛୁ ।
ଆପଣା ଦେହେ ହେତୁ କର । ପର ଘରରେ ତୁ ବିହର ।
ଏହା ତୁ ଜାଣି ନ ପାରୁଛୁ । ଦେହକୁ ମୋହତ ବୋଲୁଛୁ ।
ଓଁ କାର ପରମ ପୁରୁଷ । କହଇ ଅରକ୍ଷିତ ଦାସ ।
ଅହେ ସୁଜନମାନେ ଶୁଣ । ଘରଘରଟି ଏହୁ ମନ ॥

ଇତି ଶ୍ରୀ ଜନଚୈତନ୍ୟ ସମ୍ବାଦେ ମହାମଣ୍ଡଳ ଗୀତା କଥନେ
ନାମ ଏକବିଂଶୋଽଧ୍ୟାୟ । ୨୧ ।

ମୁଦ୍ରାକର—ଶ୍ରୀ ଦାଶରଥି ଦାସ, ଦାଶରଥି ପ୍ରେସ, କଟକ—୨
୧୯୫୮

# ବିଜ୍ଞାପନ

## ଗାୟକମାନଙ୍କ ପ୍ରଶ୍ନ-ଉତ୍ତର

## ଚଉପଦୀ ଓ ପଟଳ

ଚଉପଦୀ ରତ୍ନକଲ୍ଲୋଳ ଟ ୦।୰
ପାଲ୍ଲାଚଉପଦୀ ରତ୍ନମାଳା ଟ ୦।/
ଗାୟକ ଦର୍ପଣ ଟ ୦।/
ଗାୟକ ସର୍ବସ୍ୱ ଟ ୦।/
ଗାୟକଭୂଷଣଚଉପଦୀ ଟ ୦।୰
ଗୀତ ରତ୍ନମାଳା ଟ ୦ ୷
ଭାବ୍ୟ ଚଉପଦୀହାର ଟ ୦ ୷
ବାଦ ଚଉପଦୀ ମାଳା ଟ ୦ ୷
,, ୨ୟ ଭାଗ ଟ ୦।/
ବୃହତ୍ ପଟଳ ଟ ୦।
ରାମାୟଣ ପଟଳ ଟ ୦ ୷
ଚଉପଦୀ ସର୍ବସାର ଟ ୦ /
ଛାୟାଳଣପଟଳ ୧ମ,୨ୟ ଟ ୧ ୰
ଅଷ୍ଟକୁଞ୍ଜ ଚୌପଦୀ ଟ ୦।
ଚଉପଦୀଭୂଷଣ ଟ ୦।/

ଚଉପଦୀ ସିନ୍ଧୁ ଲହରୀ ଟ ୧ ୰
ଚଉପଦୀ ଚନ୍ଦ୍ର ଟ ୦ ୶
ବୃନ୍ଦ ପଟଳ ଟ ୦ ୶
ଗୋଲକକୁଞ୍ଜ ଚଉପଦୀ ଟ ୦।୶
ସମସ୍ତ ଗୀତାମାଳା ଟ ୦।/
ମୋଲ ପଟଳ ଟ ୦।୶
ଭାଗବତ ପଟଳ ଟ ୦ ୶
ଅକ୍ଷର ନାୟୁମୀ ଗୀତ ଟ ୦।
ମହାଭାରତ ଚଉପଦୀ ଟ ୦।
ନୃସିଂହ ପୁରାଣ ପଟଳ ଟ ୦।/
ଗାୟକ ରତ୍ନପଦ୍ମ ଟ ୦ ୷
ଗାୟକ ଗୁଣମାଳା ଟ ୦
ଗାୟକ ଢଙ୍ଗ ଟ ୦ ୰
ବାଦ୍ୟ ରତ୍ନାବଳୀ ଟ ୦।୶
ଦଣ୍ଡନାଟ ଟ ୦।

## ବୃହତ୍ ବିବିଧ ସାର ସଂଗ୍ରହ ବା

### ଜ୍ଞାନ ଭଣ୍ଡାର— ମୂଲ୍ୟ ଟ ୨



### ପ୍ରାପ୍ତିସ୍ଥାନ—ଦାଶରଥି ପୁସ୍ତକାଳୟ

ବାଲୁବଜାର, ପୋଃ କଟକ—୨